# ଅନ୍ୟତମା

ଗୋବର୍ଦ୍ଧନ ମିଶ୍ର

ଫ୍ରେଣ୍ଡସ୍ ପବ୍ଲିଶର୍ସ

# ଅନ୍ୟତମା

ରଚନା—

ଗୋରାଚାନ୍ଦ ମିଶ୍ର

ପ୍ରକାଶକ—

ଫ୍ରେଣ୍ଡସ୍ ପବ୍ଲିଶର୍ସ

ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ

ଦଶହରା—୧୯୭୨

ମୁଦ୍ରଣ—

ଶ୍ରୀ ବିଶ୍ୱମ୍ଭର ପରିଡ଼ା

ପ୍ରଜାତନ୍ତ୍ର ପ୍ରେସ

କଟକ—୨

ବାଂଧେଇ ସହ ମୂଲ୍ୟ ଦୁଇଟଙ୍କା ମାତ୍ର



ଲେଖକ

ରଚନା ଆରମ୍ଭ ତା ୧।୮।୧ ୬୨
ଶେଷ ତା ୩୦।୧।୬୨

Dear Author

of "Anyatama";

We could not help thinking that this time, too, you had read our innermost thought and had said the very words we wanted to hear.

Yours

Rina

&

Dinabandhu Das

"ନିଜକୁ କ୍ଷୟ କରି କରି ଯିଏ ଅକ୍ଷୟକୁ ଉପଲବ୍ଧି କରିପାରେ, ତାରି ନାଁ ରିନା, ସୁସ୍ନାତା ଓ ମୂର୍ଚ୍ଛନା, ଏ ବହିର ନାୟିକା, ଦୀନବନ୍ଧୁ ଦାସଙ୍କ ଶେଷ ବାନ୍ଧବୀ ।"

ବହିଟି ଛପା ସରିଗଲା, ହଠାତ୍ ମନେ ପଡ଼ିଲା, ସେ ଦିନ ମୃତ୍ୟୁକୁ ଭୟ କରି ନିଜକୁ ମାତୃତ୍ୱରୁ ବଂଚିତ କରିବା ପୂର୍ବରୁ ରିନାଦେବୀ ଦାସଙ୍କୁ ଏତିକି ମଧ୍ୟ କହିଥିଲେ ।

"ମୃତ୍ୟୁକୁ ଭୟ କରୁଚ ? ଛି ! କହୋ ମୃତ୍ୟୁ ଅଛି ବୋଲି ତ ଆମେ ଅମୃତକୁ ଖୋଜୁଚେ, କ୍ଷୟ ଅଛି ବୋଲି ତ, ଅକ୍ଷୟକୁ ଉପଲବ୍ଧି କରୁଚେ…ଇସ୍ପାତ, ପୁରୁଣା ହେଲେ ବି ହାତୁଡ଼ିର ଆଘାତ ସହିପାରେ । କିନ୍ତୁ ମାଟିର କଣ୍ଢେଇ ? ନିଆଁରେ ପୋଡ଼ି ପୋଡ଼ି ଯେତେ ଟାଣୁଆ କରି ପଛେ, ଟିକିଏ ଆଘାତ ପାଇଲେ ଚୂରମାର ।"

ଯୌବନର ଦ୍ୱାର ଠିକ୍ ଆରପଟେ ଘନୀଭୂତ ତେଜସ୍କ୍ରିୟ ଭଳି ଧ୍ୱଂସର ଅବକ୍ଷୟ । ତାକୁଇ କୁହାଯାଏ ପ୍ରୌଢ଼ତ୍ୱ ।

ଦେହ ଓ ମନ ଭିତରେ ଏଇ ପ୍ରୌଢ଼ତ୍ୱରୁ ମେଞ୍ଚାଏ ଧରି ଜୀବନର ପାକସ୍ଥଳୀରେ ପାକଳ ଗଢ଼ୁଥିଲେ ଦୀନବନ୍ଧୁ ଦାସେ । ଦର୍ପଣରେ ମୁହଁକୁ ଦେଖୁଥିଲେ, ଏତେ ଏତେ ଫୁଲ୍‌କା ଗାଲ୍ ଦଉଛି କିଏ ନେଲା ? ବୟସ କ'ଣ ଏତେ ବେଗି ନେଇଯାଇ ପାରେ ? ଏତେ ବର୍ଷ ଧରି, ଏତେ ପ୍ରଳୟ ସୃଷ୍ଟି କରି, ଏତେ ହସ ହସି, ପ୍ରଭଞ୍ଜନ, କାନନ, ବସନ୍ତ, କାଞ୍ଚନ, ତରଳିକା, ସାଗରିକା (ଆଉ ଗୁଡ଼ାକର ନାଁ ମନେ ପଡ଼ୁନି । ଶହେ କି ଦୁଇଶ' ହେବେ ପରା) କାହିଁ କେହି ତ ନେଇ ପାରି ନ ଥିଲେ ! ଖଣ୍ଡିଏ ଗ୍ଲେଜ ଦର୍ପଣ ନେଇ ତ ସେ ଏତେ ସମୟ ଧରି ଦେଖୁଥିଲେ···ସିମିତ ଫୁଲ୍‌କା ଫୁଲ୍‌କା ଗାଲ, ଦେହର ପ୍ରତ୍ୟେକ ଅଂଶ କୁନ୍ଦଲା ପରି । ଆଜି ଆଗରେ ଏତେ ବଡ଼ ବହଳ, ଏତେ ଲମ୍ବାଚଉଡ଼ା ବେଲ୍‌ଜିୟମ୍ ଦର୍ପଣ । ମୁହଁଟା ଏତେ ବୁଢ଼ା ବୁଢ଼ା, ପଶିଲା ପଶିଲା ଦେଖାଯାଉଛି କାହିଁକି ?

କ'ଣ ସେ ବୁଢ଼ା ହେଇଗଲେ ?

ଦୃଶ୍ୟମାନ ଚୌକାଠାକୁ ଦର୍ପଣ ପାଖରୁ ଘୁଞ୍ଚେଇ ନେଲେ ସେ । ଆଗରେ ଖଣ୍ଡିଏ ଛବି । ତାଙ୍କର ଶୂନ୍ୟ ଆକାଙ୍କ୍ଷାକୁ ଏକ ଦୁର୍ନିବାର ମୋହରେ ଇମିତ ଖଣ୍ଡିଏ ଖଣ୍ଡିଏ ଛବି ଅବଶ୍ୟ, ଆଲୋଡ଼ିତ କରି ରଖେ ତାଙ୍କୁ । ଛବିଟି ମାଇଁ ୱାଇଫ୍ ଅର୍ଥାତ୍ "ମୋ ସ୍ତ୍ରୀ"ଙ୍କର ହାତଲେଖା । ଦୀନବନ୍ଧୁ ଦାସେ ସ୍ତ୍ରୀ ବିଷୟ ଯାହାକୁ କହନ୍ତି—ମାଇଁ ୱାଇଫ୍ ଅମୁକ କରନ୍ତି, ମାଇଁ ୱାଇଫ୍ ଏତେ ପଢ଼ିଛନ୍ତି, ରନ୍ଧନକ୍ରିୟାରେ ସେ ଭାରି ପଟୀୟସୀ, ଗାନବତୀ, ନୃତ୍ୟବତୀ, କହୁ କହୁ ଯିମିତ ସୀମା ଟପି ଯାଆନ୍ତି ସେ । ଇମିତ ବାଗେଇ ବୁଗେଇ, ବନେଇ ଚୂନେଇ କଳ୍ପନାର ମସଲା ଦେଇ କହନ୍ତି ଯେ 'ମାଇଁ ୱାଇଫ୍' ବାରମ୍ବାର କହିବାଟା ଯେ ତାଙ୍କର ଏକ ବଡ଼ ଅଭ୍ୟାସଦୋଷ, ଶ୍ରୋତାମାନେ ସହଜେ ଧରି ପାରନ୍ତି ନାହିଁ । ସେମାନେ ଅସଲ କଥାଟାକୁ ହିଁ ଧରନ୍ତି…କଥାଟାକୁ ଧରେଇ ଦେଇ ଦୀନବନ୍ଧୁ ଦାସେ ମିଳେଇ ଯାଆନ୍ତି କାବଡ଼ ବାସ୍ତବତା ଭିତରେ । ଲୋକେ ତାଙ୍କୁ ଭୁଲିଯାଆନ୍ତି (ମାଇଁ ୱାଇଫ୍ ତ ବହୁତ ଦୂରରେ) କିନ୍ତୁ ତାଙ୍କ କଥାଟାକୁ ଭୁଲି ପାରନ୍ତି ନାହିଁ ।

ଲୋକେ କହନ୍ତି—ଦୀନବନ୍ଧୁ ଦାସେ ଭାରି ରୋଜଗାରୀ, ଅସମ୍ଭବ ବୋଲି ତାଙ୍କ ପାଖରେ କିଛି ନାହିଁ । ଟଙ୍କାପଇସା ଯେ କୌଣସି ଉପାୟରେ ରୋଜଗାର କରିବା ତାଙ୍କ ଗୁଣ; ତେଣୁ ଭାରି ବଡ଼ ଅଭାବ, ହାତରେ ପଇସାଟିଏ ନାହିଁ, ଘରେ ଚୁଲି ଜଳିନି, ୱାଇଫ୍‌ର ଦେହ ଖରାପ, ବାପାଙ୍କର ଅବସ୍ଥା କାହିଲ, ଭାଇର ଦରମା ଦିଆ ଯାଇନାହିଁ ବୋଲି ଯେତେବେଳେ ସେ କହିବୁଲନ୍ତି, ଲୋକେ ଥଟ୍ଟାରେ ଉଡ଼େଇ ଦିଅନ୍ତି । କହନ୍ତି, "କଣ ! ଦୀନବନ୍ଧୁ ଦାସ ଡାକିଲେ ବଜାରରେ ନାଁ ଡାକ, ଘରେ ଭାତ ନାହିଁ ବୋଲି କହିଦିଏ ଅଧଘଣ୍ଟାରେ ରସଗୋଲା ବାକୀଖାତାରେ ଗଡ଼େଇ ଠାକୁ ଠାକୁ [illegible]ଏ, ତାକୁ କ'ଣ ଅଭାବ ?"

ସେଇ କଥାହିଁ ମାଇଁ ଓ୍ୱାଇଫଙ୍କ ଚଠିରେ ଲେଖାଅଛୁ । "ମାଇଁ ଓ୍ୱାଇଫ୍"ଙ୍କ ଭଉଣୀର ବାହାଘର—ମାଇଁ ଓ୍ୱାଇଫ୍ ଶ୍ରୀମତୀ ସୁସ୍ମିତାଦେବୀ ବାପଘରେ । ଏଠୁ ଗଲବେଳେ ଭଉଣୀପାଇଁ ନାନା ଦରବ ଧରି ଯାଇଥିଲେ —କହି ଯାଇଥିଲେ, ତୁମେ ନ ଗଲେ ନ ଚଳେ । ବେଦରେ ସନ୍ଧ ବରଣ ହବ···ସନ୍ଧ୍ୟା ଥାଉ ଥାଉ ସନ୍ଧ୍ୟା ଥାନରେ ଗୁଆ ରଖିବାଟାଙ୍କୁ ଲୋକେ ବାହୁନିବେ । ତାଙ୍କ ମୁଣ୍ଡ ତଳକୁ ହୋଇଯିବ । ଘରେ ଫଟା ପାହୁଲ ନ ଥାଉ, ବାହାରେ ସାନ୍ ବଜାୟ ରଖିଲେ, ମାଇଁ ଓ୍ୱାଇଫଙ୍କ ମନ କୁଣ୍ଢେମୋଟ ହେବ । ଏଇ ସାନ୍ ବଜାୟ ରଖିବା ପାଇଁ ତ ତାଙ୍କ ବାକ୍ସରେ କେବେ ତାଲା ପଡ଼େ ନା । ରେଡ଼ିଓ ବାଜେ, ପଙ୍ଖା ଘୂରେ, ଇଲେକ୍‌ଟ୍ରି ଷ୍ଟୋଭ୍‌ରେ ସେପେଇ ହୁଏ । ଅଠଟା ତରକାରି ହୁଏ । ଯିଏ ଯେତେବେଳେ ଅସୁ, ଅଭ୍ୟର୍ଥନା କରିବାପାଇଁ ଦୁଆର ଦିନରାତି ମେଲା ରହେ ।

ବଡ଼ ବଡ଼ ଦାନ୍ତ ମାଇପିଲୋକ ଆସି ଡାକନ୍ତି—କଲେ ସୁନା, କୁଆଡ଼େ ଗଲୁ କ ଲୋ ! ସୁସ୍ମିତାକୁ ଏମାନେ ଡାକନ୍ତି ସୁନା ବୋଲି । ଦୀନବନ୍ଧୁ ଦାସଙ୍କ କଟିମିଟିଆ ଅକ୍ଷର ଭଳି, କଟିମିଟିଆ ନାଁଅଟା ହୋଇଥିବାରୁ ତାଙ୍କ ତୁଣ୍ଡରେ ଲେଉଟେନି । ସେ ଯୋଉଦିନ ଏ ଘରକୁ ବୋହୂ ହେଇ ଆସିଲେ, ରତମୀବୋଉ ପ୍ରଥମେ ଆସି ପଚାରିଥିଲେ, 'କଲେ ବୋହୂ, ନାଁଟି ତୋର କ'ଣ ?'

ମାଇଁ ଓ୍ୱାଇଫ୍ ମୃଦୁକଣ୍ଠରେ କହିଥିଲେ, ସୁସ୍ମିତା ।

ରତମୀବୋଉଙ୍କୁ ଶୁଭିଥିଲା ସୁନା ବୋଲି । ସୁନାରୁ ହୋଇଗଲା ସୁନି । ସୁନି ଘରେ ନ ଥାଇ ଯାଇଥାଆନ୍ତି ସିଲେଇ ସ୍କୁଲକୁ । ଛୁଟି ହେଇ ଯାଇଥିଲେ ମଧ୍ୟ କ'ଣ ଗୋଟିଏ ଜନିଷ ଖୁଣ୍ଡ ଦେଇ ଆସିଥିବାରୁ ଦୌଡ଼ ଦୌଡ଼ ଯାଇଥିଲେ । ଦୌଡ଼ ଦୌଡ଼ ଆସିଲାବେଳକୁ ଘରେ ଗୋଟେ ମାଇକିନିଆଁଙ୍କୁ ଦେଖି ସେ ଟିକିଏ ହଡ଼ବଡ଼େଇ ଗଲେ ।

ମାଇପିଙ୍କ ମଧ୍ୟରେ ରତ୍ନମଣିବୋଉଟିର ସୁନା ଉପରେ ବଡ଼ ଶରଧା । ନାନା କଥାରେ ତାଙ୍କର ଉଆରବା ଗୁଣଟି ରହିଥାଏ । ଉଆରବା ଭଳି କହନ୍ତି, କଲେ ଆସି ତନି ଗୁରୁ ବର୍ଷ ହେଲା ଘର ସଂସାର କଲୁଣି, ଘରକୁ ପୁଣି ବଡ଼ ବୋହୂ, ଇମିତ ଲଙ୍ଗଳା ହେଲେ ଚଳିବ ? ଠୋକାଠା କିଛୁ କହୁ ନା ବୋଲି ସିନା, ଅନ୍ୟ କିଏ ହୋଇଥିଲେ, ତୋର ଗୋଟାପା ଛଡ଼େଇ ଦଅନ୍ତାଣି । ହଇଲେ, ଘରଟା ଠିଆ ମେଲା, ଟେବୁଲ ଉପରେ ପଇସା ପଡ଼ିଛି, ସିନ୍ଦୁକ-ଗୁଡ଼ାକରେ ତାଲା ଦିଆ ହୋଇ ନ ଘର ତ ବୋଲି ଏଡ଼ିକି । ଏଥିରେ ତୋର ଏତେ ଅଯତ୍ନ !

ଗେଲବୋଉ କହନ୍ତି, ହଇଲେ ନାନି, ବେଙ୍କ ବୋଲି କ'ଣ ଗୋଟେ ବାହାରିଛି ପରା ! ଠଙ୍କାକଉଡ଼ି ସିଇଠି ଥିବ ମ । ନଇଲେ...।

ରତ୍ନମଣିବୋଉ ହାତକୁ ଛୁଆଁଇ ଦେଇ କହନ୍ତି, ଯାହା କହିଲୁ ! ହଇଲେ, ଏ ଗୁଡ଼ାକ ବେଙ୍କରେ ଠଙ୍କା ରଖିବେ ? ମୁଁ ପରା ଏ ଘରେ ପୋକ । ନଇତ ସକାଳ ପାହିଲେ ଏ ପରିବା-ବାଲାକୁ ଡାକ, ସେ ପରିବାବାଲାକୁ ଡାକ, ପରିବା ନାହିଁ ତ ମାଉଁସ ନେଇଆସ, ମାଉଁସ ନ ମିଳିଲା ତ ମାଛ ସେରେ ନେଇ ଆସ । ଏଗୁଡ଼ାକଙ୍କ ହାତରେ ପଇସା ରହିବ ? ଅମ୍ବୁଲ ଗୁଟି, ଲୁଣ ଲଙ୍କା ହେଣି ଏମାନେ ଭାତ ଖାଇବେ ? ଦେଖୁନ ଏମାନଙ୍କ ପସନ୍ଦ—ଏ ଟେବୁଲକୁ ଦେଖିଲୁ ତ—ଏଇ ଉପରକୁ ଦେଖ ଖାଲି ବନ୍ଧ, ଧନ ବୋଇଲେ ଏତକ । ଆ ଦେଖିବୁ ଆ । ସୁନାର ମୁଣ୍ଡରୁ ଓଢ଼ଣା ଟାଣି ଦେଇ କାନକୁ, ବେକକୁ, ହାତକୁ ଦେଖେଇ କହନ୍ତି, ଦେଖିଲୁ ତ, ସୁନା ଭରିଏ ବୋଲି ନାହିଁ । ହଇଲେ ଏଗୁଡ଼ାକ ବେଙ୍କରେ ରଖିବେ ? ଠକଲାଗୁଡ଼ାକ ପରା, କିଛି ନ ଥିଲେ ଠଙ୍କାକୁ ସିଦ୍ଧ ଖାଇଯିବେ ।

ସୁସ୍ନାତା ସେତେବେଳକୁ ଚୁଲିରେ ଗୁହା ବସେଇ ସାରି ଥଆନ୍ତି । ରତ୍ନମଣିବୋଉ, ଗେଲବୋଉକୁ ଗୁ ଦ କପ ଦେଇ,

କହନ୍ତି, ଠିକ୍ ଏ ବସ ନାଣୀ । ରତଣୀବୋଉ ଗ୍ଲ କପ୍‌କୁ ଠିକ୍ ଏ ପାଠିକି ଲଗେଇ କହନ୍ତି, ହେଲେ ସୁନାହାତର ଗୁହା କୁଆଡ଼ି ମିଳବ ନା। ଯେତେବେଳେ ଆସେ ସୁନା ନ ଦେଲେ ବି ମୁଁ କହେ, କଲେ ଗୁହା ବସେଇଲୁଣିକି ? ଖାଲି ଗୁହା ନୁହେଁ, ଗୁହା ସାଙ୍ଗକୁ ବିସ୍କୁଟ । ସେତେବେଳକୁ ଦୁଇ ଗୁର ଖଣ୍ଡ ବିସ୍କୁଟ ଧରି ସୁସ୍ନାତା ପହଞ୍ଚିସାରି ଥାଆନ୍ତି । ସୁସ୍ନାତା ହାତରୁ ରତଣୀ ବୋଉ ବିସ୍କୁଟଗୁଡ଼ାକୁ ଚଟ୍‌କନା ଧରି ନେଇ ଗେଲ୍‌ବୋଉକୁ ଗୁର ଖଣ୍ଡରୁ ଖଣ୍ଡିଏ ଦିଅନ୍ତି, କହନ୍ତି—ଗୁହା ବିସ୍କୁଟ ଖାଇବୁ ନା ଟି ଜମା, ଅଭିଆସ ହେଇଯିବ । ତା ଛଡ଼ା ତୋ ପିଲାର ଦେହରେ ଯିବ ନା । ଜଣ ଜଣଙ୍କର ଦେଖିଚ, ଗୁହା ଖାଇଲେ ପେଟ ମୋଡ଼େ, ଗରିସ୍ଥ ହୁଏ, ଝାଡ଼ା ପତଳା ହୁଏ । ମା'ର ପଥ୍ୟକୁ ନେଇ ପିଲାର ଦେହ ।

ଗେଲ୍‌ବୋଉ ସେତେବେଳକୁ ଅଧା ଗ୍ଲ ପିଇ ସାରି ଥାଆନ୍ତି । ରତଣୀବୋଉ କଥାରେ ଅଧା ରଖିଦେବା ମାନେ ରତଣୀ-ବୋଉ କହନ୍ତି, ଖାଇଲୁଣି ତ, ସବୁତକ ପିଇଦେ । ଅଇଁଠା କରି ଦେଲୁଣି, କିଏ ପିଇବ ? ବୋହୂଟା ଏତେ ଶରଧାରେ କରିଚି, ଇଚ୍ଛାଦେଲେ ତା ମନ ଖରାପ ହବ । ହଁ, ପଗୁରିବ ବୋଲି ହଜଚି, ପଗୁରି ପାରୁ ନାଇଁ ! ଆଜ ସେ ଦରମା ପାଇବା କଥା, ପାଇ ନାହାନ୍ତି । କାଆଲି ଚୁଲ୍ଲୀ ଜାଳିବାପାଇଁ ଘରେ କାଠ ନାଇଁ, ଦିଟା ଟଙ୍କା ଥିଲେ ଦେଇ ପାରିବୁ ସୁନା ? ସୁସ୍ନାତା କହନ୍ତି, ମୋଠି ତ କିଛି ନାହିଁ ନାଣୀ, ସିଏ ଆସନ୍ତୁ, କହିବି । ଦେଲେ ପଠେଇ ଦେବି ।

—ଦେବେ କ'ଣ ବା, ତୋ ପାଖରେ ନାଇଁ ?

ସୁସ୍ନାତା ମୁଣ୍ଡ ହଲେଇ ନାଇଁ କରନ୍ତି !

—ହଇଲୋ, ତୁ ପୁଣି ମତେ ଫାଙ୍କୁଚୁ ? ଏଇ ପରା ଟେବୁଲ ଉପରେ ଟଙ୍କା ଅଛି !

—ସେତକ ମାଛ କଣିବା ପାଇଁ ଦେଇ ଯାଇଚନ୍ତି ।

—କାଲେ ଗୁଡଟାରେ ମାଛ ! ଛି ଛି ଅପୂରୁବ କଥା କହୁଚ, ତ ତୁ ! ତୁଟି ଦଖଣ୍ଡକୁ ହରଡ଼ଡାଲ ଟିକଏ ହେଲେ ଚଳେ । ଇମିତ କର କର ତୁ ଘରଟାକୁ ସାବଦେବୁ ପର ! ଅଜ ସାଇତବୁ କଂଣ ? ଅଜ ଅସୁ ମୁଁ ତାକୁ କହୁଚ । ତୁ ତ ତାଠୁ ବଳକା ଦେଖଚ ··· । ଦେଲୁ ଦେଲୁ ସେ ଠଙ୍କା । ମୋଠି ହେଲେ ରହିଥିଲେ, ଲୋଡ଼ା ପୁନଅଁରେ ମାଗିଲେ ମିଳବ । କହୁ କହୁ ବଡମାବୋଉ ସେତକ ହାତରେ ମୁଠେଇ ଧରନ୍ତି ଅତ ଜୋରରେ ।

ଗେଲ୍‌ବୋଉ ଜାନତକୁ କାଚ ଶିଶିଟିଏ ବାହାର କରି କହନ୍ତି, "ସିଏ ତ ଅସିଲବେଳକୁ ଗୁଡ ବାର । ଦୋକାନ ବଜାର ସବୁ ବନ୍ଦ । ଫୁଟେଇବାପାଇଁ ତେଲ ନାଇଁ, ଏଇ ଶିଶିରେ ଟିକଏ ଦେଇଥବ, କାଲ ଫେରେଇ ଦେବି"—କହିଦେଇ ପାଅକଅ ତେଲ ଶିଶିଟିକୁ ବଢ଼େଇ ଦଅନ୍ତି ସୁସ୍ନାତା ଆଉକୁ । ସୁସ୍ନାତା ଫେର ପାଇବ ତ ଅଲ୍ପ ଟିକଏ କାହିଁକ ଦେବ, ମାନସମ୍ମାନ ରକ୍ଷା କରିବାପାଇଁ ତେଲଟିଣରୁ ତେଲ ଢାଳ ବସନ୍ତି । ଠିକ୍ ତେଲଶିଶିଟି ଭର୍ତ୍ତି ହେବା ବେଳକୁ ଗେଲ୍‌ବୋଉ କହନ୍ତି, ଏତେ କାହିଁକ ଦଉଚ ମ ! କାଲ୍‌କ ସେ ଅଣିବେ ନା । ହଉ ଦେଲୁଣି ତ ଦେ ! କନୁ ବୋଉ, ସବୁ କଥା ମୁଁ ପାଶୋର ଯାଏ । ଅମ ଗେଲ ତ ତମ ଦାଣ୍ଡକୁ ଖେଳବାକୁ ଅସୁଚ । ଟିକଏ ମନେ ପକେଇଦବୁ, ଏଁ ।

ବଡମାବୋଉ କହନ୍ତି, ହିଁ ମ, ତୁନ ହ, ସେଥିକ କ'ଣ ସେ ମନେ କରୁଚ ? ସିଏ ନ ହେଲେ, ମୁଁ ମନେ ପକେଇ ଦେବି ! କାଅଲକ କ'ଣ ସେ ଧର ବସିଚ ? କାଅଲ ନ ହେଲେ ପଅର-ଦନ ଫେରେଇ ଦବୁ । ହଉ ଗୃଲଲୁ ଜମା, ପିଲାଟାକୁ ପଠେଇ ଝାଠ ପାଞ୍ଚ ଝଡ଼ା ଅଣିଲେ ଯାଇ ଚୁଲୀ ଜଳିବ । ଗେଲ୍‌ବୋଉ ଓ ବଡମାବୋଉଙ୍କ ଅଉ ଦଣ୍ଡେ ରହିବାକୁ ତର ସହେ ନା ।

ଭଡିି ଗୃଲ୍ ପାଆନ୍ତି ସେ । ଗଲାବେଳେ କହି ଯାଆନ୍ତି, ବୋହୂ, ଆ, ଦୁଆର ଦେଇଦେ ! ସଞ୍ଜ ହେଇଗଲାଣି ! ବଲିତା ବସା ! ଦୁଆର ମେଲା ରଖିବୁ ନାହିଁ । ସମୟ ଅସମୟ, ଚୋରଦ୍ୱାର ନାନା କଥା । ସିଏ ତ ଯାଇ ଅସିବ ଯେ ରାତି ବାର । ଘରେ ଏକା ତୁ ।

ସେମାନେ ଗୃଲ୍‌ଯିବା ପରେ ସୁସ୍ନାତାଦେବୀ ମୁଣ୍ଡରେ ହାତ ଦେଇ ବସନ୍ତି । ମାଛବାଲା ଦାଣ୍ଡରେ ମାଛ ମାଛ ବୋଲି ଡାକ ପକାଏ । ନିତିଦିନିଆ ଗ୍ରାହକ ବୋଲି ସେ ଥରେ ଡାକ ଦେଇ ଗୃଲ୍‌ଯାଏନା । ଦୁଆର ପଡ଼ିଥିଲେ ଆସି ଦୁଆର ବାଡ଼ାଏ । ଦୁଆର ପଡ଼ି ନ ଥିଲେ, ଦାଣ୍ଡରେ ବଡ଼ ପାଟିରେ ପନ୍ଦର କୋଡ଼ିଏ ଥର ଡାକେ ।

ଧାର ମାଗିଲେ ସେ ନିଶ୍ଚୟ ଦେବ, ଏ କଥା ସୁସ୍ନାତାଦେବୀ ଜାଣନ୍ତି; କିନ୍ତୁ "ଋଣଂ କୃତ୍ୱା ଘୃତଂ ପିବେତ୍" ଦୀନବନ୍ଧୁ ଦାସଙ୍କ ଜାତକରେ ନାହିଁ । ନିଜେ ସିନା ଲୁଚିଛି କରନ୍ତି, ଘରେ ସ୍ତ୍ରୀକୁ ଧାର କରିବାକୁ ମନା କରି ଯାଇଥାଆନ୍ତି । ସୁସ୍ନାତାଦେବୀ ସବୁଗୋଟି ଦରାଣ୍ଡନ୍ତି । ପଇସେ ପଇସେ କରି ଗଣନ୍ତି; ପାଏ ମାଛର ଦାମ୍‌ଠାରୁ କମ୍ ପଇସା ।

ଦୁଧରେ ଯେତେ ପାଣି ମିଶେଇଲେ ବି ଧଳା, ତା ନାଁ ଦୁଧ । ତେଣୁ ଯେତେ ମାଛ ହେଉ ପଛକେ ତରକାରୀରେ ମାଛ ପକେଇଲେ ଆଇଁଷ । ତାଙ୍କର ମନେ ପଡ଼େ, ସମ୍ବଲପୁରରେ ହୀରାକୁଦବନ୍ଧ ହେବା ପୂର୍ବରୁ ଜଣଙ୍କ ଘରକୁ ସେ ଭୋଜି ଖାଇବାକୁ ଯାଇଥିଲେ । ସମ୍ବଲପୁରରେ ସେତେବେଳେ ମାଛ ଦୁର୍ମୂଲ୍ୟ । ବଙ୍ଗାଳୀମାନେ ମାଛଠେକଲା । ଆଇଁଷ ନାଁ ଧରିଲେ, ତାଙ୍କର ପାଟିରୁ ଲାଳ ବହିଯାଏ । ଭୋଜିରେ ଜଣେ ବଙ୍ଗାଳୀ ଭଦ୍ରଲୋକ ବସିଥାଆନ୍ତି । ପରଷିବାଲା ତରକାରୀ ଧରି ଆଇଁଷ ଆଇଁଷ ବୋଲି ପାଟି କରୁଥାଏ । ଆଇଁଷ ନାଁ ଶୁଣିବାମାତ୍ରେ ବଙ୍ଗାଳୀ ଭଦ୍ରଲୋକ ଏଇଟି ଏଇଠି କହି ନିଜ

ପତରକୁ ଦେଖେଇ ଦଅନ୍ତି । ତରକାରି ଦେଇ ପରିବେଷକ ଗୁଲିଯାଏ । ଭଦ୍ରଲୋକ ପାଟିରେ ଲଗେଇ ଦେଖନ୍ତି, ସେଇ ଗୋଟେ ତରକାରି । ଅଇଁଷର ନାଁ ଗନ୍ଧ ନାହିଁ । କଣ ଏଇଟା ତ ଅଇଁଷ ତରକାରି ନୁହେଁ ! ଭୋଜକର୍ତ୍ତା ଆସି କହନ୍ତି, କହନ୍ତୁ ନା ଆଜ୍ଞା, ଅଇଁଷପାଇଁ ବଡ଼ ହଇରାଣ ହେଇଚ ଆଜ । ସାରା ସମ୍ବଲ-ପୁର ଘୂରିଗଲି—ମାଛ ଫାଛ କେଉଁଠି ମିଳିଲା ନା । ଗଦେଇ କେଉଟକୁ କହିଥିଲି, ସେ ଦିନଯାକ ବୁଲି ବୁଲି, ଦଇଟା ଅଙ୍ଗୁଠି ମୋଟର ଗଡ଼ିଶା ଆଣିଥିଲା, ସେତକ ଏ ତରକାରିରେ ପଡ଼ିଚ ବୋଲି ଯା ନାଁ ଅଇଁଷ-ତରକାରି । ସେତେବେଳକୁ ବଙ୍ଗାଳୀ ଭଦ୍ରଲୋକଙ୍କ ପାଟିରୁ ଲାଳ ଗଡ଼ିବା କୁଆଡ଼େ ବନ୍ଦ ହେଇ ଆସିଥିଲା । ଯାହା ବାହାରିଥିଲା, ସେତକ ସେଇ ତଥାକଥିତ ଅଇଁଷ ତରକାରିରେ ପଢ଼ି ଗୋଳେଇ ହେଇ ଯାଇଥିଲା ।

ସୁସ୍ନାତାଦେବୀ କୌଣସି ଉପାୟ ନ ଦେଖି ଅଧପାଏ ମାଛ କିଣି ସେଦିନ ଅଇଁଷତରକାରି କରିଥିଲେ । ଯାହାହେଉ, ରକ୍ଷା ମିଳିଲା ସେଦିନ । ଦୀନବନ୍ଧୁ ଦାସେ କୁଆଡ଼େ ଡିନର୍ ଖାଇ ଫେରିଥିଲେ । ତାଙ୍କୁ ଅଇଁଷତରକାରି ଖୁଆଇବା ଦରକାର ପଡ଼ିଲା ନା । ସେ ମାଇଁ ଓ୍ୱାଇଫ୍‌ଙ୍କ ପାଖରେ ଡିନର୍‌ରେ ମାଂସ-ତରକାରିଟା କିମିତି ହେଇଥିଲା, ଆସି ବର୍ଣ୍ଣନା କରିଥିଲେ ।

ଏଇ ସେଇ ସୁସ୍ନାତାଦେବୀଙ୍କ ଶଠି···

ସୁସ୍ନାତଙ୍କୁ ଦୀନବନ୍ଧୁ ଦାସେ ଡାକନ୍ତି ରନା ବୋଲି । ରନାଦେବୀ ତାଙ୍କୁ ନାଁ ଧରି ଯଥା ଦୀନବନ୍ଧୁବାବୁ ନକରେଇ ଖାଲି ବାବୁ ବୋଲି ଡାକନ୍ତି । ଏଇ ନାଁ ଦିଅନିଆର ପଛେଣି ଗୋଟାଏ ଇତିହାସ ଅଛି । ବାହା ନ କରୁଣୁ ବହୁବର୍ଷ ଆଗେ ଥରେ ସେ କଲିକତାରେ ଗୋଟିଏ ଫିଲ୍ମକୁ ଦେଖିଥିଲେ···କ'ଣ ଗୋଟାଏ ସମ୍ମିଳନୀକୁ ଦୀନବନ୍ଧୁ ଦାସେ ଓଡ଼ିଶାରୁ ପ୍ରତିନିଧି ହୋଇ ଯାଇଥିଲେ । ପ୍ରତିନିଧିମାନଙ୍କ ରହିବାର ବ୍ୟବସ୍ଥା ଅଶୁତୋଷ କଲେଜରେ ହୋଇଥାଏ ।

ସେଠି ପ୍ରତିନିଧିମାନଙ୍କ ଭଲମନ୍ଦ ଦେଖିବା ଲାଗି କଲେଜ ଛାତ୍ରୀମାନେ ସ୍ୱେଚ୍ଛାସେବିକା ନିଯୁକ୍ତ ଥାଆନ୍ତି । ସେଇମାନେ ଭାତ ଡାଲି ପରଷନ୍ତି, କୁଆଡ଼େ ଯାଉଁଥିବା ଗାଡ଼ି ଯିବ, କୁଆଡ଼େ ପରିଷ୍କାର କରିବ, କୁଆଡ଼େ ଗାଧୋଇବ ବାଟ ଦେଖେଇ ଦିଅନ୍ତି । ପ୍ରତିନିଧି ସଂଖ୍ୟା ଯେତେ, ସ୍ୱେଚ୍ଛାସେବିକା ନିଯୁକ୍ତ ଥିଲେ ତାଠୁ ଦୁଇଗୁଣ । ସେମାନେ ମଝି ମଝିରେ ଆସି ପ୍ରତିନିଧିମାନଙ୍କ ହସ୍ତାଙ୍କିତ ନିଜ ସ୍ୱାକ୍ଷର ଓ ଠିକଣା ସବୁ ନିଜ ଅଟୋଗ୍ରାଫ୍ ଖାତାରେ ଟିପି ନିଅନ୍ତି —ବିଦାୟ ନେଲାବେଳେ ଖିଲ୍ ଖିଲ୍ ହସି ବାତାବରଣଟାକୁ କମାଲ୍ କରି ଦିଅନ୍ତି । ସେମାନଙ୍କ ମଧ୍ୟରେ ବହୁ ଷୋଡ଼ଶୀ ସୁନ୍ଦରୀ ଝିଅ ବି ଥାଆନ୍ତି । ସମ୍ମିଳନୀ ସରିଲା, ଦୀନବନ୍ଧୁ ଦାସ ବଡ଼ ଅଭାବ ଅନୁଭବ କଲେ । ଦେଖିଲେ, ଅନ୍ୟ ପ୍ରତିନିଧିମାନେ କିଏ କ'ଣ କିଣି ନେଉଛନ୍ତି । କିଏ ସ୍ତ୍ରୀପାଇଁ ଶାଢ଼ୀ, କିଏ ପିଲାପାଇଁ ଜୋତା-ମୋଜା ଇତ୍ୟାଦି; ଯାଙ୍କ ହାତରେ ପଇସା ନାହିଁ କି ଯାହା ପାଇଁ ନିଅନ୍ତେ, ସିଏ ବି ନାହିଁ । ବଳିଥିଲା ହାତରେ ଟଙ୍କାଏ ଦଶଅଣା ପଇସା । ଟଙ୍କାକର ଅଙ୍ଗୁର କିଣିଲେ, ଆଉ ଦଶ ଅଣାରେ ଗୋଟିଏ ଛୋଟ ନୋଟଖାତା ଭଳି ଏକ ଡାଏରୀ ବହି କିଣି ଆଣିଲେ । ଆଶୁତୋଷ କଲେଜରୁ ବିଦାୟ ନେଲା-ବେଳେ ଉପସ୍ଥିତ ପନ୍ଦର କୋଡ଼ିଏ ସ୍ୱେଚ୍ଛାସେବିକାଙ୍କୁ ଗୋଟିଏ ଗୋଟିଏ ଅଙ୍ଗୁର ଫଳ ଧରେଇ କହିଲେ, 'ଦୟାକରି ଏ ନୋଟ-ଖାତାରେ ଆପଣମାନଙ୍କ ସ୍ୱାକ୍ଷର ଓ ଠିକଣାଟିମାନ ଦେଇ ପାରନ୍ତେ ଯଦି ସୁଖୀ ହୁଅନ୍ତି ।' ସେମାନେ ଆନନ୍ଦରେ ନିଜ ନିଜ ନାମାଙ୍କିତ କରି ଦେଇଥିଲେ···ସେଇ ଅଙ୍କିତ ନାମ ମଧ୍ୟରୁ ଜଣଙ୍କର ନାଁ ଥିଲା ସୁସ୍ମିତା । ତାଙ୍କ ନାଁ ତଳେ ଦିଆଯାଇଥିଲା— ରିନା । ଦୀନବନ୍ଧୁ ଦାସଙ୍କ ମନକୁ ଏ ନାଁଟି ବେଶ୍ ପାଇଯାଇଥିଲା, ସେଇଦିନଠୁଁ ସେ ମନେ ମନେ ଠିକ୍ କରି ନେଇଥିଲେ ଯାହାକୁ ସିଏ ବାହାହେବେ, ତା ନାଁ ଦେବେ ସୁସ୍ମିତା, ଡାକିବେ ରିନା, ରିନା···

ସୁସ୍ନାତାଦେବୀଙ୍କ ବାପଘର ନାଁ ମୂର୍ଚ୍ଛନା । ଭାରି ଭଲ ନାଁଟିଏ, ତେଣୁ ଧ୍ୟାନବନ୍ଧୁ ଦାସେ ବଡ଼ ଦ୍ୱନ୍ଦରେ ପଡ଼ିଥିଲେ କିଛିଦିନ; କିନ୍ତୁ ମନେ ମନେ ଥରେ ଯାହା ଶପଥ କରି ନେଇଚନ୍ତି, ତାକୁ ରକ୍ଷା କରିବା ଉଚିତ ହେବ ବୋଲି ମୂର୍ଚ୍ଛନା ଦେହରେ ଗାର କାଟି ଧାଡ଼ିତଳେ ସୁସ୍ନାତା ଲେଖି ଦେଇଥିଲେ; କିନ୍ତୁ ମୂର୍ଚ୍ଛନା ନାଆଁଟିକୁ ମୁରୁଛି ମୁରୁଛି ସେ ବହୁଦିନ ଧରି ମନରେ ବଡ଼ ବେଦନା ଅନୁଭବ କରିଥିଲେ ।

ସୁସ୍ନାତାଦେବୀଙ୍କଠାରୁ ଆସିଥିବା ଚିଠି ପଢ଼ିଲେ, ତାଙ୍କ ପ୍ରାଣରେ ପନ୍ଦର ଷୋଳ ବର୍ଷର ବଳବୀର୍ଯ୍ୟ ଆସିଗଲା ଭଳି ସେ ଅନୁଭବ କରନ୍ତି । ଠିକକ ତଳେ ସେ ଅନୁଭବ କରୁଥିଲେ, ସେ ଯିମିତି କ୍ରମଶଃ ବୁଢ଼ା ହୋଇ ଯାଉଚନ୍ତି; କିନ୍ତୁ ପରେ ପରେ ମନରୁ ସେ ଅବସାଦ ତାଙ୍କର ତୁଟିଗଲା । ଚିଠିଟିକୁ ଥର ଥର କରି ପଢ଼ିଲେ…ପୁଣି ଲେଖାଅଛି, ତୁମ ଅବସ୍ଥା କଥା ମୁଁ ବୁଝୁଚି, ବୋଉକୁ ମଧ୍ୟ ବୁଝେଇଲି କିନ୍ତୁ ତା ମନ ବୁଝୁନି । ନ ଆସିଲେ ବଡ଼ ଦୁଃଖ କରିବ ସେ । ତୁମେ ପରା ତା'ର ବଡ଼ ଜୋଇଁ । ମନେ ପଡୁନି କି ? ଦେଖିବାକୁ ଗଲେ ଏଇଟା ଏ ଘରର ପ୍ରଥମ ଭୋଜିଉତ୍ସବ…ମୋ କଥା ଛାଡ଼, ମୋପେଇଁ ଭୋଜି ହୋଇଚି ନାଁ ଭାତ ହୋଇଚି ? ସଂଯୁକ୍ତାକୁ ପୃଥ୍ୱୀରାଜ ଟେକି ଆଣିଲା ଭଳି ଲୁଚିଠି ଥିଲି, ଟେକି ନେଇ ଆସିଲି ମତେ । ଜୋଇଁଟି କିମିତି ବୋଲି ଦେଖିବାକୁ କାହାରିକି ଦେଲି ନାଇଁ । ତୁମେ ନିଜେ ଠକିଲ କି ଆମ ବାପ-ମା ତମକୁ ଠକେଇଲେ, ଆସ ଇଟିକେ ଦେଖିବ । ଚନ୍ଦ୍ରମୁଖୀପାଇଁ କ'ଣ ନ ଦିଆ ହୋଇଚି ? ବରକୁ ମଟର ସାଇକଲ୍, ରେଡ଼ିଓ, ଘଣ୍ଟା, ପାଟ ଯଥା; ଚନ୍ଦ୍ରମୁଖୀପେଇଁ କୋଡ଼ିଏ ଭରିର ଏତେ ହାର । ହାତକୁ ଦଶ ଦଶପଟ କରି କୋଡ଼ିଏ ପଟ ସୁନା କାଚ । ତା ଛଡ଼ା ତ ଡ୍ରେସିଂ ଟେବୁଲ୍, ଖଟପଲଙ୍କ—କେତେ କଥା ଅଛି । ତୁମ ଅପେକ୍ଷା କ'ଣ

ସ୍ତ୍ରୀ ବର ବେଶି ପାଠୁଆ ? ଯାଇ ଯାଇ ମାଟ୍ରିକ । ତୁମେ ମାଗିଥିଲେ କ'ଣ ପାଇ ନ ଥାଆନ୍ତ ? ମୁଁ କ'ଣ କୁଆଡ଼େ ଚାଲି ଯାଉଥିଲି ? ବାଇଦ ବାଜିବ, ବରକନ୍ୟା ବେଦୀରେ ବସିବେ । ହଜାର ହଜାର ଲୋକ ଖାଇବେ । ଦଶ ପନ୍ଦର ଠା ତରକାରି ହେବ । କିଏ କେତେ ଜିନିଷ ଆଣି ଉପହାର ଦେବେ ! ଚିନ୍ମୟୀ କାନ୍ଦିବ । ଆମେ କାନ୍ଦନା ଲୋ ବୋଲି ବୁଝେଇବୁ··· ଶେଷକୁ ଶାଶୁଘରକୁ ଯିବ । ତୁମେ ଭଲ ମତେ ଠିକଏ କାନ୍ଦିବାକୁ ହେଲେ ସମୟ ଦେଇଥାଆନ୍ତ···ବାପ ମା'ଙ୍କୁ ଭଲି ଭଲି କାନ୍ଦିବାକୁ ଗଲାବେଳେ ଇମିତି ଗୋଟେ ଗୋଟେ ମଧୁରିଆ କଥା କହିଦିଅ ଯେ କାନ୍ଦଟା କୁଆଡ଼େ ଚାଲିଯାଏ, ସିଏ କିନା ହସି ପକାଏ ।

ବଡ଼ ବିଚିତ୍ର ମଣିଷ ତମେ···ବାହା ତ କଲ କଲ, ତିନି ବର୍ଷ ଲାଗିଗଲା ଶ୍ୱଶୁରଘରଟା କୁଆଡ଼ି ଜାଣିବାପାଇଁ । ଶ୍ୱଶୁରଙ୍କୁ ଚିହ୍ନ ନା, ଶାଶୁଙ୍କୁ ଚିହ୍ନ ନା । ଅଥଚ ତୁମେ ସେମାନଙ୍କର ଜୁଆଇଁ-ପୁଅ, ସେଥିରେ ପୁଣି ବଡ଼ ଜୁଆଇଁ । କିଏ ମତେ ବଙ୍ଗାଳୁଣୀ, କିଏ ବା କହିଲା ଚାପୁଣୀ, ତୁମର ଯାହା କଥା ନା, ବୁଝିଲି ହଁ । ଘର ଆରପଟେ ବସି ତୁମେ ତମ ସାଙ୍ଗପିଲାଙ୍କ ସାଙ୍ଗରେ କଥା-ବାର୍ତ୍ତା ହୁଅ; ମୋ ନାଁରେ ସେମାନେ ନାନା ମିଛ ସତ କହନ୍ତି, ମୋତେ ମୂକ ହୋଇ ଏ ଘରେ ବସିରହିବାକୁ ପଡ଼େ । ଇଚ୍ଛା ହୁଏ, ମୁହିଁ ପିଟେଇ ପ୍ରତିବାଦ କରନ୍ତି, କହନ୍ତି ସବୁ ମିଛ, ମୁଁ ଓଡ଼ିଆଣୀ । ତୁମେ ତ ଅନ୍ତତଃ ପ୍ରତିବାଦ କରିବା କଥା···ସେତିକ ମଧ୍ୟ ତୁମ ଦେଇ ହୁଏ ନା । ଏତିକି ମାତ୍ର ମୋର ପ୍ରଶଂସା ଯେ ମୁଁ କୁଆଡ଼େ ବି· ଏ·, ଏମ୍· ଏ· ପଢ଼ା ଝିଅ ! ହଉ ହେଲା !

ଚିଠିରେ ଅଦ୍ଭୁତ ଅନେକ କଥା ଥିଲା, ଦୀନବନ୍ଧୁ ଦାସେ ସବୁଗୁଡ଼ିକ ଏଠି ଲେଖିବାକୁ ପ୍ରସ୍ତୁତ ନୁହନ୍ତି । ଏଇ ପନ୍ଦର ଦିନ ତଳେ ଶ୍ୱଶୁର ଆସି ପ୍ରଥମେ ଦାଣ୍ଡରେ ବୁଲୁଥିବା ଦୀନବନ୍ଧୁ ଦାସଙ୍କୁ ହିଁ ଦୀନବନ୍ଧୁ ବାବୁଙ୍କ କୋ ଘର ବୋଲି ପଚାରୁଥିଲେ ।

ଦାସେ ନିଜ ଘରଟିକୁ ଦେଖେଇ ଦେଇ ଠିକଣା ବୁଲିବୁଲି କରି ଘରେ ପହଞ୍ଚିଲେ । ଘରେ ପଶିଲାବେଳକୁ ଶ୍ୱଶୁର ନିଜ ଝିଅକୁ ପଚାରୁଥିଲେ, ଜୁଆଇଁ କ'ଣ ଘରେ ନାହାନ୍ତି ? ରମା ଦେବୀ କହୁଥିଲେ, "ଇଲାଗେ ଥିଲେ, ଦାଣ୍ଡରେ ବୁଲୁଥିବେ ।"

ଦୀନବନ୍ଧୁ ଦାସେ ଏଇ ଜଣକ ହିଁ ତାଙ୍କ ଶ୍ୱଶୁର ବୋଲି ମନେ ମନେ ଠଉରେଇ ନେଇ ନିଜକୁ ପ୍ରସ୍ତୁତ କରିନେଇଥିଲେ । ତେଣୁ ଅସିଲାମାତ୍ରେ ପ୍ରଣାମ କରି, ଗାଡ଼ିରେ ନା ବସ୍‌ରେ ଆସିଲେ ବୋଲି ଅତି ପରିଚିତ ଭଳି ପଚାରିଲେ । ତା ପରେ ନାନାଅଙ୍ଗୁ ଦୁଃଖସୁଖ କଥା ପଡ଼ିଥିଲା । ଦାସଙ୍କୁ ନିମନ୍ତ୍ରଣ କରି ଥିଲେ ବାହାଘରେ ଯୋଗଦେବାପାଇଁ । ଦାସେ ନାନାଅଙ୍ଗୁ ନାନା ଅସୁବିଧା ବାଢ଼ି ବସିଥିଲେ । ଶେଷରେ ଯିବାଟା ସମ୍ଭବ ନୁହେଁ ବୋଲି ସ୍ଥିର ହୋଇଗଲା, ସେଇଲାଗି ମାଇଁ ଓ୍ୱାଇଫ ରମାଦେବୀଙ୍କଠୁ ତାଙ୍କୁ ବହୁତ ଭର୍ତ୍ସନା ଶୁଣିବାକୁ ପଡ଼ିଥିଲା । ନ ଯିବ ତ ନ ଯିବ, ବାପାଙ୍କୁ ରେକଠୋକ୍ ମନା କରିଦେବାଟା ଠିକ୍ ହେବନି ବୋଲି ସେ କହୁଥିଲେ । ତା ପରେ ଯିବା ନ ଯିବା କଥା ଯେତେବେଳେ ପଡ଼ିଥିଲା, ଦାସେ ରେକଠୋକ ମନାକରି ଠିକଣା ବନ୍ଦେଇ ଚନ୍ଦେଇ ଯିବାପାଇଁ ଚେଷ୍ଟା କରିବେ ବୋଲି କହିଥିଲେ । ଶ୍ୱଶୁର ନିଜ ଝିଅକୁ ଧରି ସେଦିନ ରାତି ରାତି ସ୍ୱଗ୍ରାମ ଅଭିମୁଖେ ଯାତ୍ରା କରିଥିଲେ । ଗଲାବେଳେ ରମାଦେବୀ ଦେଇ-ଥିବା ଯେଉଁ ଠିକଣାକୁ ଦାସେ ଶ୍ୱଶୁରଘର ଠିକଣା ବୋଲି ବିଶ୍ୱାସ କରୁ ନ ଥିଲେ; ଶ୍ୱଶୁର ସେଇ ଠିକଣାଟି ଗୋଟିଏ କାଗଜରେ ଟିପି ଦେଇ ଯାଇଥିଲେ । ତା ଛଡ଼ା କେଉଁ ଗାଡ଼ିରେ ଗଲେ, ସେଠି କେତେବେଳେ ପହଞ୍ଚି ପାରିବ, ତା'ର ହିସାବ କିତାବ ମଧ୍ୟ ବୁଝେଇ ଦେଇ ଯାଇଥିଲେ ।

ଶେଷରେ ଦାସେ ଶ୍ୱଶୁରଘରକୁ ଗଲେ ତାଙ୍କୁ କେହି ଚିହ୍ନି ପାରିଲେ ନି; କିନ୍ତୁ ତାଙ୍କର ମନେ ହେଲା ସେ ସମସ୍ତଙ୍କୁ ଚିହ୍ନିଛନ୍ତି । ଛ କି ସାତ ଶାଳୀଙ୍କ ମଧ୍ୟରୁ ମାଇଁ ଓ୍ୱାଇଫ୍‌କୁ

ଖୋଜିବାପାଇଁ ତାଙ୍କୁ ଘଣ୍ଟାଏରୁ ଟିକିଏ ବେଶି ସମୟ ଲାଗି ଯାଉଥିଲା । ରିନାଦେବୀଙ୍କୁ ସେ ଖୋଜି ବାହାର କଲେ ରନ୍ଧାଶାଳରୁ । ମୁଣ୍ଡରେ ଓଢ଼ଣା ଦେଇଥିଲେ ସେ । ପୂଜାରୀ ରନ୍ଧା ରନ୍ଧ ସାରି ଖିର ତରକାରୀ ଚଖାଉଥିଲା, ସେ ଚାଖୁଥିଲେ । କେଉଁଠାରେ ଲୁଣ କମ୍ ହୋଇଗଲା, ଖଟା ମିଠା ଠିକ୍ ଅଛି କି ନାହିଁ, ଏ ସବୁ ଦାୟିତ୍ୱ ତାଙ୍କ ଉପରେ ତାଙ୍କ ମାମୁଁ ଦେଇଥିଲେ ବୋଲି ସେ ତା ଅବଦନ ଶୁଣିଲେ । ଦୁଇଟି ଶାଳୀ ପ୍ରତି ଟିକିଏ ଆକୃଷ୍ଟ ହୋଇ ପଡ଼ିଲା ଭଳି ବ୍ୟବହାର କରୁଥିଲେ ବୋଲି ଦେଖଣାହାରୀଏ ଗୁଣୁ ଗୁଣୁ ହେଲେ କଥାବାର୍ତ୍ତା ହେଉଥିବା ଶୁଣାଯାଉଥିଲା । ଅବଶ୍ୟ ସେଇଟା ତାଙ୍କର ଦୋଷ ନୁହେଁ । ସେଇ ଶାଳୀ ଦଇଟାର ରୂପର ଦୋଷ । ତା ଛଡ଼ା ରିନାଦେବୀଙ୍କ ମୁହଁ ସହିତ ଏଗୁଡ଼ାକଙ୍କ ମୁହଁର ଟିକିଏ ସାମଞ୍ଜସ୍ୟ ଥିଲା । ଅର୍ଥାତ୍ ତିନି ବର୍ଷ ତଳେ, ରିନାଦେବୀଙ୍କୁ ଗାର୍ଲ୍ସ ସ୍କୁଲ ବସରେ ବସିବା ଓ ଓହ୍ଲାଇବାବେଳେ ଯେଉଁ ରୂପରେ ସେ ଦେଖିଥିଲେ, ଏ ଦଇଟା ଠିକ୍ ସେମିତି ଦେଖାଯାଉଥିଲେ, ତେଣୁ ଭୁଲ ହେବାଟା ସ୍ୱାଭାବିକ । ଦାସେ ଯୋ ଦଇଟା ପଛରେ ପଛରେ ଗୋଡ଼ଉଥିଲେ, ସେ ଦଇଟା କର ଛଡ଼ା ଦେଇ, ଥରେ ଥରେ ବଜୁଲି ମାରିଲା ଭଳି ଟିକିଏ ଟିକିଏ ମୁହଁକୁ ଦେଖେଇ ଦେଇ, ପୁଣି ଘରକୋଣେ ପଶି ଯାଉଥିଲେ । ତା ଅବଦନ କୈଫିୟତ ତଲବ ହେବାବେଳେ, ଦାସେ ଏଇ କଥା କହୁଥିଲେ । ଅଜ ସେ ଦଇଟା ମିଛ କହିଲେ କି ସତ କହିଲେ କେଜାଣି, କହିଲେ କ'ଣ ନା, ଏ ଜଣକ ମୂର୍ଚ୍ଛନାନାମୀର ବର ବୋଲି ଅମେ ଜାଣି ନ ଥିଲୁ । ଜାଣିଥିଲେ ତ ସାଙ୍ଗେ ସାଙ୍ଗେ ତା ପାଖେ ନେଇ ଜୁଟେଇ ଦେଇଥାଆନ୍ତୁ ।

ସାତ ଝିଅରୁ, ଛଅ ଦୁଇଟି । ଗୋଟିଏ ତ ଗଲା ରିନା, ଅଉ ରହିଲେ ଛଅଟି । ସେଥିରୁ ଗୋଟିଏ ପେଣ୍ଟ ପିନ୍ଧିବା ବୟସର ନୁହଁ । ଅଉ ତିନୋଟି ମଧ୍ୟରୁ, ଗୋଟିଏ ବାହା ହବ, ଅଉ ଦୁଇଟି ସେତେ ବଡ଼ ନୁହନ୍ତି କି ସେତେ ଛୋଟ ନୁହନ୍ତି, ଧର କିଶୋରୀ । ଦାସଙ୍କ ଆଖିରେ କିନ୍ତୁ ସେଗୁଡ଼ାକ ମଧ୍ୟ ଯୁବତୀ ଭଳି

ଦେଖାଯାଉଥିଲେ । ନଇଲେ ସେଥିରୁ ଗୋଟାକୁ 'କେଉଁ ଟୁଙ୍କ'ଣ ବାହା ହଉଛୁ କି' ବୋଲି ପଚାରିବ ନ ଥାଆନ୍ତେ ।

ଦାସେ ଅସିଚନ୍ତି ବୋଲି ସୁପ୍ରଭାତାଦେବୀ ଯେ ଜାଣି ନ ଥିଲେ, ତା ନୁହେଁ । ସେ ଠିକ୍‌ଏ ଲୁଚକାଳି ଖେଳୁଥିଲେ । ବର ଅସିଚନ୍ତି ଜାଣିବା ମାନେ ତାଙ୍କର ଅଗରେ ଅଗରେ ହେଲେ ଅନ୍ୟମାନେ ହୁଏତ ବରସୁଆଗି ବୋଲି ଚଳେଇବେ, ଏ ଭୟ ତାଙ୍କର ଥିଲା । ତା ଛଡ଼ା ଏତ୍ତ ଗ୍ରାଜକେମା ମେଳ ଭିତରୁ ସେ ତାଙ୍କୁ ଖୋଜି ପାଇ ପାରବେ କି ନାଇଁ, ଜାଣିବା ପାଇଁ ଅଯାଚି ଭାବରେ ଠିକ୍‌ଏ ଯତ୍ନ କରୁଥିଲେ ।

ଜଙ୍ଗଲ ପାଖ ଘର, କାଠ ଶସ୍ତା । ଏଡ଼େ ଏଡ଼େ ଫଡ଼ା କାଠ ସବୁ ଚୁଲ୍ଲିରେ ଭର୍ତ୍ତି ହୋଇଥାଏ । ଦାଉ ଦାଉ ହୋଇ ଜଳୁଥାଏ । ସେଇ ଅଗ୍ନିଶିଖାରେ ସୁପ୍ରଭାତାଦେବୀଙ୍କ ମୁହଁଟିକି ଠଉରେଇ ନେଇଥିଲେ ଦାସେ । ସେତେବେଳକୁ ତରକାରି ଚଖା ସରିଯାଇଥିଲା, ଖିରି ଚଖା ଆରମ୍ଭ କରୁଥିଲେ ରତ୍ନାଦେବୀ । ଅଇଁଠା ତୁଣ୍ଡରେ ଦାସଙ୍କୁ କହିଲେ, କଣ ଅସୁ ନ ଥିଲ ପରା ? କେମିତି ଅସିଲ ? ପଇସା ପତ୍ର କୁଆଡ଼େ ଜୁଟୁ ନ ଥିଲା ? କେମିତି ଜୁଟିଗଲା ?

ପଇସା କଥା ପଡ଼ିଲେ ଦାସଙ୍କ ମୁହଁ ନେଳି ପଡ଼ିଆସେ । ସେ ଭାବନ୍ତି, ଗରିବଗୁରୁବାଙ୍କ ପକ୍ଷରେ ଏଇ ଅର୍ଥଦଣ୍ଡଟା ହିଁ ବଡ଼ ଦଣ୍ଡ । ଯ୍ୟାଠୁ ବଳି କଠୋର ଅମାନୁଷିକ ଦଣ୍ଡ ବୋଧହୁଏ ମଣିଷ ଉପର ଅଇନରେ ନାଇଁ । ଥରେ ସେ ମାତ୍ର ଟଙ୍କା ପାଞ୍ଚଟି ପାଇଁ କେମିତି ଜଣଙ୍କ ପାଖରେ ଶହେ ଥର ଗୋଡ଼ ଭାଙ୍ଗି ଠିଅ ହୋଇଥିଲେ ସେ କଥା ତାଙ୍କର ମନେ ପଡ଼ିଯାଏ ।

କହିଲେ—ଅସିଲି, ଲୋକାପବାଦରୁ ରକ୍ଷା ପାଇବା ପାଇଁ, ତୁମ ଚିଠି ପାଇଁ ନୁହେଁ । ତା ଛଡ଼ା ଶ୍ୱଶୁରଘରଟା କେମିତି, ଶ୍ୱଶୁର-ଘରେ ଜୁଆଇଁଙ୍କୁ କିମିତି ଅଭ୍ୟର୍ଥନା କରାଯାଏ, ଜାଣିବା ପାଇଁ ।

—କ'ଣ କରୁ ଅଭ୍ୟର୍ଥନା ପାଇଲ ? ବାଟରୁ ହାତୀରେ ବସାଇ ସୁନା ଚଅଁର ହଲେଇ ଆଣିଲେ ନା ?

ସେତେବେଳକୁ ତଥାକଥିତ ମାମୁଁ ଶ୍ୱଶୁର ଆସି କହିଲେ, କଲେ ମୃଚ୍ଛ'ନା, ଜୁଆଇଁଙ୍କ ଗୋଡ଼ହାତ ଧୋଇବା ପାଇଁ ପାଣି ଦେ । ପରେ କଥା ହେବୁ । ଶାଳୀ ଭିତରୁ ଜଣଙ୍କ ନାଁ ଧରି ଡାକି କହିଲେ, ଅଲେ, ଏ କୁଆଡ଼େ ଗଲ କଲେ, ଜୁଆଇଁଙ୍କୁ ପାନ ଆଣି ଦେ । ବସିବା, ରହିବାର ବ୍ୟବସ୍ଥା କର ।

ଇଆଡ଼େ ରନ୍ଧାରନ୍ଧ କରୁଥିବା ପୂଜାରୀ, ସୁସ୍ନାତାକୁ ପଚାରିବାର ଶୁଣାଯାଉଥିଲା—ନାଣୀ ଏଇ ନା ? ମୂଲଆଣି ବେସର ବାଟୁଥିଲା, ସେ ବି ଠିକଏ ଠିକଏ କହୁଥିଲା, ହଇଁ ହେ ନାଣୀ, ଏଡ଼େ ଦୁରବଲିଆ, କ'ଣ ଦିହ ଖରାପ ହୋଇଥିଲା ? ଏମାନଙ୍କ ଭିତରେ ଜଣେ ସରକାରୀ ପିଅନ ସେଇଠି କ'ଣ କରୁଥିଲା କେଜାଣି, ହଠାତ୍ ଉଠିଆସି ଦାସଙ୍କୁ ପଚାରିଥିଲା, "ବାବୁ, ଆଗ ଏରିଅର୍ ଟଙ୍କା ମିଳିବ ନା ଦରମା ଟଙ୍କା ?"

ଦାସେ ବଡ଼ ହଇରାଣରେ ପଡ଼ିଲେ । କ'ଣ କହିବେ, ଥିର କରି ନ ପାରି, ହଠାତ୍ କହିଥିଲେ, ଏକାଠି ଦିଆଯାଇ ମିଳିବ । କେଉଁ ଏରିଅର ଟଙ୍କା ସେ ପ୍ରଥମେ ବୁଝିପାରି ନ ଥିଲେ, ପରେ ଯାଠୁ ତାଠୁ ବୁଝି ଜାଣିଲେ ଯେ ଦରମା କମିଶନଙ୍କ ସୁପାରିଶ ଅନୁଯାୟୀ ଯେଉଁମାନଙ୍କର ଦରମା ଗଲା ମାର୍ଚ୍ଚମାସରୁ ବଢ଼ିଛି, ସେମାନେ କୁଆଡ଼େ ଏକାଠି ବଢ଼ିବା ଟଙ୍କାତକ ପାଇବେ । ସରକାରୀ ପିଅନର ସେଇ ଝାଙ୍କେଣି ।

× × × ତା' ଆର ଦିନ ବାହାଘର । ସେ ଦିନ ରାତିଟି ପାହିଗଲା । ଗୁରୁଆଡ଼େ ହାଉଯାଉ । ମାଇପିଙ୍କ ତୁଣ୍ଡରେ କେତେ କଥା ଶୁଣାଗଲା । କିଏ କହିଲା—ଚାଳୁଯାଉଟା ଗୁଳପିବ, ଚୋଡ଼ାଣି ଠିକଏ ପିଅଇ ପାରିଲ ନାହିଁ । ପିଲାଟି ରାତି ପାହିଲେ ଘରକୁ ଆସେ । ମୋ ଚଟଣୀକୁ ନ ଦେଖିଲେ ଦଣ୍ଡେ ରହି

ପାରୁନା ସେ । ହଁ, ଝିଅ ତ ! ମୋ ଚାକିରିଟି ପାଠ ପଢ଼ୁଛି ବୋଲି ସିନା ରହିଛି, ନ ହେଲେ ଏତେବେଳକୁ ଘର ଖାଲି କରି କୁଆଡ଼େ ଯାଆନ୍ତିଣି ।

ସେପଟେ ଢୋଲଅମାନେ ଢୋଲେ ଲେ୍ଖାଏଁ ପିଇ ଦେଇ ଧୂନି ଜାଳି ଢୋଲଚମଡ଼ା ଶୁଖାଉଥିଲେ । ସୁରଭିନାମୀ ବୋଲି କିଏ ଜଣେ ସୁସ୍ମିତାଦେବୀଙ୍କ ବନ୍ଧୁବାନ୍ଧବ ଆସି ଏଡ଼େ ପାଟିରେ କହିଲେ, "କିଟରେ, ବଜାଉ ନ କାହିଁକି—ଇଟଲି ପରି ବର ଆସି ପହଞ୍ଚିବ "

ବାଇଦ ବାଜିଲା, ହୁଳହୁଳି ପଡ଼ିଲା, ଶଙ୍ଖ ବଜେଇବା ପାଇଁ ଝିଅଙ୍କ ମେଳରେ କଳିକଜିଆ । କାହା କ ହାର ଗାଲ ଫୁଲି ଉଠୁଛି କିନ୍ତୁ ଶଙ୍ଖ ବାଜୁନି । ଛଡ଼େଇ ନେଇ ଆଉ ଜଣେ କହୁଛି, ଦେଏ ବା ମତେ ଦେ । ସ୍ୱା ହାତରୁ ତା ହାତ ହୋଇ ହୋଇ ଦଶ ପନ୍ଦର ହାତ ହେଲା—ଶଙ୍ଖ ଆଉ ବାଜିଲା ନି । ଜଣେ ଆସି ଦାସଙ୍କୁ ଦେଖାଇ କହିଲା, କ'ଣ ବଜେଇବାକୁ ଇଚ୍ଛା, ଅମ ଆଡ଼କୁ ଇମିତ ଜଳ ଜଳ ଚାହିଁ ରହିଛ ଯେ—ନିଅ ବଜାଅ ।

ଶେଷରେ ଦାସେ ଶଙ୍ଖ ବଜେଇଲେ । ଭାରି ସୁନ୍ଦର ଭାବରେ ବାଜିଲା । ସହରରେ କଳାକେନ୍ଦ୍ରର ଜଣେ ଆଜୀବନ ସଭ୍ୟ ସେ । ବାଜା ବଜେଇବାର ଅଭ୍ୟାସ ନ ଥିଲେ ମଧ୍ୟ କିଏ କମିତ ବଜାନ୍ତି ଦେଖିବାର ଅଭ୍ୟାସ ତାଙ୍କଠି ଅଛି । ଛନ୍ଦହୀନ ଅଧୁନିକ କବିତା ଯେଉଁଭଳି ନବୋଧ ପାଠକଙ୍କ ପାଖରେ ନିରର୍ଥକ ଭାବରେ ଆଦର ପାଏ, ଦାସଙ୍କ ବାଦ୍ୟର ପ୍ରଶଂସା ସେହିଭଳି ଏ ଝିଅଗୁଡ଼ାକୁ ଭାରି ଭଲ ଲାଗିଥିଲା । ସୁସ୍ମିତାଦେବୀଙ୍କୁ ଦେଖେଇ କହିଲେ, କିଲେ ନାମୀ, ଇଏ ତ ସବୁକଳାର କଳାକାର । ଆଉ କଣ ଜାଣନ୍ତି କହୁନୁ ? ହାରମନିୟମ୍ ବଜେଇ ଜାଣନ୍ତି ।

ଦାସେ ସେତେବେଳକୁ କଳାକାଠ ପଢ଼ି ଆସିଥାଆନ୍ତି— ଏଇଟା ଶଙ୍ଖ, ଗୋଟେ କଣା । ଗୋଟିଏ ବାଟରେ ପବନ ଗଲେ

ଗୋଟିଏ ମାତ୍ର ସ୍ୱର ବାହାରେ, ସେ ସ୍ୱରର ଅର୍ଥ ଯାହା ହେଉନା କାହିଁକି, ଏକସ୍ୱରୀ ବାଦ୍ୟ ଇଏ। ଯଦି ବଂଶୀ ଅଣି ଦଅନ୍ତୁ, ବଡ଼ ହଇରାଣରେ ପଡ଼ିବେ ସେ। ଗୁଡ଼ିଏ କଣା, ହାତ ଅଙ୍ଗୁଳିକି ଠିକ ଧରିବାକୁ ପଡ଼େ। ସମୟ ଅନୁଯାୟୀ ଉଠେଇବାକୁ ବି ପଡ଼େ। ବହୁସ୍ୱରୀ ବାଦ୍ୟ ସେ।

ଜଣେ ସତକୁ ସତ ଗୋଟାଏ ବଂଶୀ ଆଣି ଧରିଥିଲା। ଦଇବ ଯୋଗକୁ ଶାଶୁ ଆସି ସେଇଟି ତା' ହାତରୁ ଛଡ଼େଇ ନେଇ କହିଲେ, ଅଲକ୍ଷଣି! କିଏ ବାହାଘରରେ କିଏ ବଂଶୀ ବଜାଏ?

ଶାଶୁ ଚାଲିଗଲେ। ଜଣେ ପଚାରିଲେ, ସତେ ଜ୍ୱାଇଁ, ବାହାଘରେ ବଂଶୀ ବାଜେନି—କୃଷ୍ଣ କ'ଣ ବଜାଉ ନ ଥିଲେ?

ଦାସେ କହିଲେ, ସେ କଥା ଭାଗବତ ବହିରେ ଲେଖା ଅଛି କି ନା ମୁଁ ଜାଣିନି, କିନ୍ତୁ ଏକଥା ଜାଣେ ଯେ ଗୋପପୁରରେ ବାହାଘର ହେଉ ନ ଥିଲା।

—ସେଠି କ'ଣ ସବୁ ଝିଅ ଅଭିଆଡ଼ି ରହୁଥିଲେ?

—ନାଁ ସମିତି କିଛି ନୁହେଁ ଯେ କୃଷ୍ଣ କୁଆଡ଼େ ସବୁ ଗୋପାଙ୍ଗନାଙ୍କୁ ବାହା ହୋଇ ଯାଇଥିଲେ—ଇମିତି ବୈଦିକ ରୀତିରେ ନୁହେଁ, ଅନ୍ୟ ରୀତିରେ ତାଙ୍କର ପ୍ରୀତି ହେଉଥିଲା। କିନ୍ତୁ ବଂଶୀହିଁ ଥିଲା ତାଙ୍କର ଅଣଚାର ବେମାଠୁ ବଳି ବଳ ଯ୍ୟାନ। ଏଇ ବୋମାରେ ସେ ଗୋପାଙ୍ଗନାଙ୍କ ବୁକୁ ଫଟେଇ ଦେଇ ପ୍ରୀତିର ଝରଣା ବୁହାଇ ଦେଉଥିଲେ। ବଂଶୀ ବଜେଇ ଗୋଧନ ଚରାଉଥିବାଟା ମିଛକଥା। ପ୍ରକୃତରେ ସେ ଭ୍ରମଭଳି ଭୁଆସୁଣୀ ଝିଅଗୁଡ଼ାକୁ ଚରଉଥିଲେ। ଝିଂକି ଓଟାରି, ପଣତ ଟାଣି ଚୁମା ଦେଇ ଦେଇ ହଇରାଣ କରି ପକାଉଥିଲେ।

ଚୁମା କଥା ପଡ଼ିବାମାତ୍ରେ ଗୋଠଟାଯାକ ଝିଅ ଲାଜରେ ଜଡ଼ସଡ଼ ହୋଇ କିଏ କୁଆଡ଼େ ପଳେଇଥିଲେ। କୁହାକୁହି ହେଲେ—

ହେଲେ, ନାଳୀର ବରଟା ଏତେବେଳେ ଶୁଣିଥିଲି—ଛି ଛି ଶାସ୍ତ୍ରକୁ ପୁଣି ବ୍ୟବହାର କେବେ ଇମିତ ଅର୍ଥକରେ !

ଝପଟି ଅସିଥିଲେ ସୁସ୍ମିତାଦେବୀ—ବର୍ଜ ବ'ଣ୍ ସବୁ କହୁଲ କ, ପିଲାଗୁଡ଼ାକ ମୁହଁରେ ଅଜ କିଛୁ କଥା ନାହିଁ, ଖାଲି ଡମ କଥା । ଟିକିଏ ମୁହଁ ବନ୍ଦକର ଭଲ, ଯୁଉଠି କ ଯିବ ସେଥି ! ଧନ୍ୟ ହେ ତୁମେ ।

ଦାସେ କହୁଥିଲେ, ଶୀତରେ ପିଲାଙ୍କ ଓଠ ଫାଟି ଯାଇଥିଲା, ବାକ୍‌ସରୁ ଭୁଲରେ ଭେସ୍‌ଲିନ୍ ଡ଼ବାଟା କାଢ଼ୁ କାଢ଼ୁ ହାତଟା ତୁମର ସେ ଘରେ ଥିବା ଅଚାର ଡବା ଭିତରେ ପଶି ଯାଇଥିଲା । ସେଇଥିରୁ ଟିକିଏ ଟିକିଏ ବୋଲି ଦେଇଚ । ଟିକିଏ ଟିକିଏ ଖଟା, ଟିକିଏ ଟିକିଏ ରାଗ କିନ୍ତୁ ଭାରିମିଠା ଲାଗି ଥିବ, ଲାଳ ବି ଗଡ଼ିଥିବ ବହୁତ ।

ସୁସ୍ମିତା ଦେବୀଙ୍କ ଓସାରିଆ ପାଟି ସଙ୍ଗେ ସଙ୍ଗେ ସଙ୍କୁଚିତ ହୋଇ ଯାଇଥିଲା । ରାଗରେ ତମ ତମ ହୋଇ ବିବାହ ପ୍ରସ୍ତୁତ ବିଭୂଷିତା ତରୁଣୀ ଯୁଠି ବସିଥିଲେ, ତାର ଅଗରେକିନା ଗୋଟାଏ ସତରେଞ୍ଜି ପକେଇ ଦେଇ କହୁଲେ, ଅସିଲ୍, ତୁମେ ଏଇଠି ବସିଥ, ମୁଁ ଡାକିଲେ ଯାଇ କୁଆଡ଼େ ଯିବ, ନଇଲେ ନାହିଁ । ଯଦି ଯାଅ, ଦେଖ ଏ ଘଁଚୁଣୀ ମୁଠାକୁ !

ଘରେ ଯିଏ ବାଂଶ ବିରାଡ଼ି ଭଳି, ଟିକିକ ପାଟିରେ ଯାଇ ଚୁଲି ମୁଣ୍ଡରେ ତୁନିଟି ହୋଇ ବସେ, ସେଇ ସୁସ୍ମିତାଦେବୀଙ୍କର ବାପଘରେ ଏତେ ଭଡ଼, ଇମିତ ଉଗ୍ରଚଣ୍ଡୀ ରୂପ, ସେ କେବେ ଦେଖି ନ ଥିଲେ, ଇଲଗେ ଦେଖିଲେ । ନିଜର ପୌରୁଷର ସମସ୍ତ ଶକ୍ତିକୁ ଠେଲାଠେଲି କରିନେଇ ଦାସେ ଯାଇ ବସିଲେ ଲକ୍ଷ୍ମୀ ଚଉରୀ ଘେରରେ ବସିଥିବା ଶାଳୀ ଚନ୍ଦ୍ରମୁଖୀଙ୍କ ଅଗରେ ।

ଚନ୍ଦ୍ରମୁଖୀ ମୁହଁ ପୋତି ବସିଥିଲା—ବାଦଲ ଭଳି ମଝି ମଝିରେ ଶବ୍ଦ ହେଉଥିଲା । ମଝିମଝିରେ ଦାସେ ତୋଳେଇବା

ଭଙ୍ଗ ଧରଲେ । ଚିନ୍ମୟୀ ଧୀରେ ଧୀରେ ମୁହଁକୁ ଟେକି ତାଙ୍କ ଆଡ଼କୁ ଚାହିଁଥିଲା । ଥରେ ଥରେ ଇମିତ କରେଖି ଗୃହଥିଲ ଯେ ଦାସେ ଆଖି ଖୋଲିବ କି ବୋଲି ଭାବି ଆଖି ଦାଇଟା ଖୋଲି ଖୋଲି ବନ୍ଦ ହୋଇ ଯାଉଥିଲା । ଚିନ୍ମୟୀର ତରଳ, ସରଳ ଆଖି ଦାଇଟା ବଡ଼ ଭଲ ଥିଲା ତାଙ୍କୁ ।

ହଠାତ୍ ପଛିନାସର ବୁଢ଼ୀ ଜଣେ ଅସି କହିଲେ, ହଇଲୋ ଏଇଟା କିଏ ମ ? ଚିନ୍ମୟୀକୁ ଦେଖେଇ କହିଲେ, କିଲୋ, ଏତକକୁ ବନ୍ତୁ କଣ ବରକୁ ଆଣି ପାଖରେ ବସେଇଲୁଣି ? ଆଉ ବେଦରେ ବସିବା ଦରକାର କ'ଣ ? ତମଘରେ ତ ବେଦରେ ନ ବସି ବାହାଘର ହେବାର ପରଥା ଗୃଲିଲାଣି, ନ ହେଲେ କି ଚଳିବ ନା ? ଚିନ୍ମୟୀ ମୁହଁ ଖୋଲିବା କଥା କି କହିବା କଥା ନୁହେଁ, ତେଣୁ କିଛି ନକହି ମୁଣ୍ଡକୁ ହଲେଇ କହୁଥିଲା, ଇଏ ସିଏ ନୁହଁନ୍ତି—ନାଣୀବ ବର ।

—ଏଁ, ମୂର୍ଚ୍ଛନା ବର ? ମତେ କହୁନୁ ? ଦାସଙ୍କୁ କହିଲେ, ହଇହେ ପୁଅ, ତମେ କେତେବେଳେ ? ଦେଖିବୁ ଦେଖିବୁ ବୋଲି କେତେ ଅମୂର୍ଚ୍ଛ ନୁକ ହଉଥିଲି, ଅସିଲ, ଭଲ କଲ । ଅଲୋ ଏ ସୀତା ! (ଶାଶୁଙ୍କ ନାଁ ସୀତା) ହଇ ଲୋ, ବଡ଼ ଜୋଇଁ ଅସିଲେଣି, ଖବର ଟିକିଏ ବି ଦେବାକୁ ନାଁଇଁ—ମତେ ଅବସ୍ଥା ପିଠାରେ ପକେଇ ଦେଲୁ ଯେ, ତାକୁ ଘୁଣି ଘୁଣି ମଲଣି ।

ଶାଶୁ ଅସି ପଗୃରିଲେ, କ'ଣ ମତେ ଡାକୁଥିଲ ମା ?

—ଡାକୁ ନ ଥିଲି ଯେ ଏଇ ମୂର୍ଚ୍ଛନାବର କଥା ଟିକିଏ ବୁଝ ବୋଲି କହୁଥିଲି । ତୁ ସିନା ଚହ୍ନିନୁ, ମୁଁ ଚହ୍ନିଚି । ଇଏ କିଏ ଜାଣିଚୁ ଟିକି ? ତୋ ଜୋଇଁ ନୁହଁ ଲୋ, ମୋ ଦଅରଙ୍କ ଶଳାର ପୁଅ । ତୁ କୁଇଠି ବୁଝିବୁ ? ମୋ ନାତି ସାଥିରେ କଟକରେ ସ୍ୟାଙ୍କର ସବୁବେଳେ ଦେଖାହୁଏ । ନାତି ସ୍ୟାଙ୍କରି କଥା ଯେତେ-ବେଳେ ଅସେ, କହେ । ଭାରି ବଡ଼ଲୋକ ଇଏ—ଦହଟି ସିନା ପତଳା; କିନ୍ତୁ ଭାରି ଠାଣୁଆ ଲୋକ ! ତୁ ଇଠି ବସ, କହିବି ।

ଘିଅ ଡବାଟା ଧରି ଶାଶୁ ଠିଆ  ହେଇଥାନ୍ତି । କହନ୍ତି, ବେଳନାଇଁ ମା, ତୁମେ ବସି ଗପସପ କରୁଥ, ମୁଁ ଯାଉଚ ।

ଦାସଙ୍କ ସାଥିରେ ବୁଢ଼ୀଜଣଙ୍କ ବହୁତ ଗପସପ କରନ୍ତି । ଜୁଆଡ଼ କ'ଣ ଆଣି ଯୋଡ଼ଯାଡ଼ି କହନ୍ତି, ତୁମେ ମୋର ଅମୁକର ଅମୁକ । ଅମୁକର କଥାରୁ ସୂତା ଲମ୍ବି ଯାଇ ସମୁଦ୍ର ପାଖରେ ଛୁଟନ୍ତେ । ଦାସଙ୍କୁ ଭାରି ବିରକ୍ତି ଲାଗେ ଶୁଣିବାପାଇଁ ।

ଶାଳୀ ଚିନ୍ମୟୀ ସେତେବେଳକୁ ଘୁମାଉଥାନ୍ତି ।

ହଠାତ୍ ବାହାରୁ ହୁରି ଶୁଭିଲା, ଆଲୋ ଏ ବର ଆସି ଗଲେଣି । ପରେ ପରେ ଦାଣ୍ଡରେ ଥିବା ପଂଝାଟାଯାକ ଢ଼ିଅ ଆସି ଚିନ୍ମୟୀ ପାଖରେ ଘେରିଗଲେ । ସେମାନଙ୍କ ଧାରଣା, ବର ଆଗମନ ଖବର ଦେଇଦେଲେ ଚିନ୍ମୟୀର ମୁହଁରେ ନିଶ୍ଚିତ ଲାଜଣିଏ ହବ ହସ ଫୁଟି ଉଠିବ ।

କିନ୍ତୁ ଓଲଟା ଫଳିଲା । କୁମାରୀ ଚିନ୍ମୟୀଦେବୀ ଏତେ ବେଗି ଶ୍ରୀମତୀ ହେବାକୁ ଚାହାଁନ୍ତି ନାହିଁ । ସେ ବେଣି କାଇଁ କଇ ହେଇ କାନ୍ଦ ଜୁଡିଲେ । ଯିଏ ଯେତେ ବୁଝେଇଲେ, ଚନ୍ଦନଭଳି ଶୀତଳିଆ କଥା କହିଲେ, କୋଉଥିରେ ହେଲେ ତାଙ୍କ କାନ୍ଦ ବନ୍ଦ ହେଲାନି । ଦାସେ ପିଲାମାନଙ୍କୁ କହିଲେ, ତୁମେମାନେ ଯାଅ କି ମୁଁ କାନ୍ଦ ବନ୍ଦ କରିଦେବି । କହିଲେ, ଚିନ୍ମୟୀ ଅଶ୍ରୁ ନିଃସରଣରେ ଯେଉଁକି ନିଜକୁ ଉଚ୍ଛ୍ୱାସ କରିବା କଥା, ଏଇ ଦଶ ପନ୍ଦର ମିନିଟ ମଧ୍ୟରେ କରିଦଅ, ନଚେତ୍ ସେ ବଡ଼ ଭଉଣୀଠାରୁ ଅବସ୍ଥା କରି ଯେଉଁ ନବବଧୂର ପରଂପରା ସୃଷ୍ଟି କରିଚନ୍ତି, ତାହା ମାଟି ହୋଇଯିବ । ଜୀବନରେ କାନ୍ଦିବାର ସୁଯୋଗ ଦୁର୍ଭାଗ୍ୟ ଜୁଟେଇ ଦେବ, ଏବେ କେବଳ ସୌଭାଗ୍ୟବତୀ ଭାବରେ କାନ୍ଦିବାଟା ଏକ ବିଡ଼ମ୍ବନା । ଚିନ୍ମୟୀ କିଛି ବୁଝି ପାରି ନ ଥିଲା । ଜୁଆଇଁ କ'ଣ ଗୋଟାଏ ବଡ଼ କଥା କହୁଚନ୍ତି ବୋଲି ଭାବି କାନ୍ଦ ବନ୍ଦ କରି ଦେଇଥିଲା ।

ବାହାଘର ହେଲା । ବରକନ୍ୟା ବେଦିରେ ବସିଲେ । ହୁଳହୁଳିରେ ସେ ପୂର ମୁଖରିତ ହୋଇ ଉଠିଲା । ମରଦ, ମାଇପି ସଭିଏଁ ଏପଟ ସେପଟ ବହୁତ ହେଲେ । କୁଳଟା ଆଣ କହିଲେ, କିଏ ତାଟ ନେଇ ଦେଲା, ଗୁଆ ଆଣ କହିଲେ ନଡ଼ିଆ ନେଇ ମେଣ୍ଟେଇଲା । ଶ୍ୱଶୁରଙ୍କ ଯୋ ପାଟି ! ଗୋଠୁଟେ ହବ ବରଯାତ୍ରୀ ଆସିଥିଲେ, ପିଲାଙ୍କି ଅ ବରଟିଏ ବୋଲି ଗୁଡ଼ାଏ ଟୋକାଟାକଲିଆ ପିଲା ଆସିଥିଲେ ବରଯାତ୍ରୀରେ । ସମସ୍ତଙ୍କ ଦେହରେ ପୁରା ସୁଟ୍ । ସିଗାରେଟ ମୁହଁରେ ଲଗିଛି ତ ଲଗିଛି । ସୁସ୍ନାତାଦେବୀ ହଣ୍ଡାଏ ହବ ଗୁହା ବସେଇ ଦେଇ କପ୍ କପ୍ କରି ବାହାରକୁ ପଠଉଥିଲେ । ଟୋକାଳିଆ ବରଯାତ୍ରୀଗୁଡ଼ାକ ପଣାଭଳି ସେଗୁଡ଼ାକ ପିଇ ପକଉଥିଲେ । ବରଠୁବଳି ସେମାନଙ୍କ ସାଜସଜା । ହାତରେ ଗୋଟିଏ ଗୋଟିଏ ପଚିଶି ଟଙ୍କାକିଆ ବକ୍ସ କାମେରା । ମୁହଁରେ ବ୍ୟାକରଣଶୂନ୍ୟ ଫଟଫାଟ ଇଂରେଜୀ । ଯଥା—ଅଇ ସାଲ୍ ଗେ ଇଙ୍ଗ ଟୁ ପ୍ଲେ ଦାଟ୍ । ସହରରୁ ଅସିଚନ୍ତି ଗୋଟିଏ ଅଦିବାସୀ ପଲ୍ଲୀଗାଁକୁ । ଏ ଗୁଡ଼ାକ ନଙ୍ଗା, ବୁଲି, ଯାଇମୁ, ଖାଇମୁ ଭ୍ରେଷାର ଲୋକ । ଦାସେ ବେଦି ପାଖରେ ପଡ଼ିଥିବା ବେଦିପାଲି ଉପରେ ବସି ମୁହଁକୁ ଅଣ୍ଟୁ ଭିତରେ ଗୁଞ୍ଜି ଲକ୍ଷ୍ୟ କରୁଥିଲେ । ଗୋଟିଏ ଗୋଟିଏ କାମେରାରେ କିଏ କେତେଥର କନା ଲାଇଟରେ ସଟ୍ ନେଇ ପାରୁଛି, ତାହାହିଁ ହେଲା ତାଙ୍କର ପ୍ରଧାନ ଲକ୍ଷ୍ୟ । ଗୋଟିଏ ବିଲ୍ ଫିଲ୍ମ୍‌ରେ ସେଇ ଚପମାଉଆ ବରଯାତ୍ରୀଟି ଷୋହଳଟି ସଟ୍ ନେବା ଦେଖି ସେ ହସି ପକାଉଥିଲେ । ବିବେକ ହସନା କହିବାରୁ ଅଟକେଗଲେ । ହସିପକେଇ ଥିଲେ କିଛି ନା କିଛି କାଣ୍ଡ ସୃଷ୍ଟି ହୋଇଥାଆନ୍ତା ସେଠି ।

କାହାର କେଉଁଠିକି ଲକ୍ଷ୍ୟ, ସ୍ୱୟଂ ବରଙ୍କ ଲକ୍ଷ୍ୟଥିଲା ସର୍ବାଙ୍ଗ ଅବୃତା ଚନ୍ଦ୍ରମୁଖୀର ଗୋଡ଼ର ଅଙ୍ଗୁଠି ଅଗ୍ରଭାଗଙ୍କ । ଅଙ୍ଗୁଠିଗୁଡ଼ିକୁ ଦେଖି ଦେଖି ସେ ଭାବିପତ୍ନୀଙ୍କ ଅବୟବର ରଙ୍ଗ, ଢଙ୍ଗ,

ଲମ୍ବା ଚଉଡ଼ାକୁ କଳ୍ପନାର ମାପରେ ମାପୁଥିଲେ । ଥରେ ଥରେ ସେ ବିହ୍ୱଳ ହୋଇ ଶାନ୍ତ୍ୱୀର ଗୋଡ଼ଅଙ୍ଗୁଠିରୁ ଗୋଟିଏ ଦର୍ଭଟିକୁ ଛୁଇଁ ପକାଉଥିଲେ । ଠିକ୍ ଏତକବେଳକୁ ପୁରୋହିତେ କହି ଉଠୁଥିଲେ, ଦ ହାତରେ ଦୂବ-ବରକୋଳି-ଅରୁଆଚାଉଳ ଧରି ପୂର୍ଣ୍ଣକୁମ୍ଭକୁ ନିକ୍ଷେପ କରନ୍ତୁ । ବରଙ୍କ ହାତ ଅଙ୍ଗୁଠି ଦେହରୁ ଉଠିଆସୁଥିଲା । ଦାସେ ଏସବୁକୁ ମଧ୍ୟ ଲକ୍ଷ୍ୟ କରୁଥିଲେ ।

ଠିକ ଶଙ୍କୁ ବରଣବେଳକୁ କିନ୍ତୁ ଦାସେ କେବପାଲି ଉପରୁ ଉଠି ଅନ୍ୟତ୍ର ଚାଲି ଯାଇଥିଲେ । ବେଳା ଗଡ଼ିଯିବ ବୋଲି ପୁରୋହିତେ ଅପେକ୍ଷା ନ କରି, ବାହାର ଅନ୍ୟପ୍ରସ୍ଥ ଲେଉଟେଇ ଗଲେ । ଶଙ୍କୁଙ୍କ ଉପସ୍ଥିତିରେ ତାଙ୍କ ଅନୁପସ୍ଥିତିରେ ଯାହାହେବା କଥା ସେୟା ହେଲା—ଗୁଆ ରଖାଗଲା ।

ସୁସ୍ନାତାଦେବୀ ପରେ ଦାସଙ୍କ ଉପରେ ମାରି ନ ମାରି ହୋଇ କହିଲେ, ଯୋଉଥିପାଇଁ ଭୟ କରୁଥିଲି, ସେୟା ହେଲା । ଅସି ନ ଅସିବା ଭଳି କାର୍ଯ୍ୟକଲି । ହଉ ନେଇ ଏତକ କହି ଗୋଟାଏ ଲୁଗା ଯୋଡ଼, ଅଉ ଗୋଟିଏ ନଡ଼ିଆ ଧରେଇ ଦେଇ, ମୁହଁକୁ ଛୁଆଁଡ଼ ପଶିଗଲେ ସେଇ ତରକାରି ରଖା ଜାଗା ରନ୍ଧାଶାଳ ଭିତରକୁ । ଦାସେ ବୋକାଙ୍କ ଭଳି କୁଅଡ଼କୁ ନ ଯାଇ ମଝିଘର ଏରୁଣ୍ଡି ତଳେ ବସି ପଡ଼ିଲେ ।

···ବନ୍ଦାଣ ସରିଲା । ଶାନ୍ତ୍ୱୀ ବେଦୀରୁ ଫେରିଲାବେଳେ ଅଣ୍ଡିଏ ହେବ ଟଙ୍କା ପଇସା ଧରି ଅସିଲା । ସିଥିରେ ରୁପାଟଙ୍କା, ନୋଟ, ସୁନାଚୁଡ଼ି, ଶାଢ଼ୀ ଅଦ ନାନା କଥାଥିଲା । ସୁସ୍ନାତାଦେବୀ ଗଣାଗଣିବେଳକୁ ଅସି ପହଞ୍ଚିଲେ । ଶାନ୍ତ୍ୱୀ ଏ ସବୁ ପସରା ମେଲି ଦାସଙ୍କଠୁ ଟିକିଏ ଦୂରରେ ଲୁଚି ବସିଥାଏ । ସୁସ୍ନାତାଦେବୀ ଗୋଟିଏ ଗୋଟିଏ ଜିନିଷ ଅଣି ଦାସଙ୍କୁ ଦେଖାଇ ଥାଆନ୍ତି । ଫେରେଇ ନେଲାବେଳେ କହୁଥାଆନ୍ତି, ଦେଖିଲ ତ ? ମୁଁ କ'ଣ କହୁଥିଲି ! ଇଠି ବାହା ହେଇଥିଲେ, ମୁଁ କ'ଣ ଇମିତି ପାଇ ନ ଥାନ୍ତି ? ଇଏ ତ ମୋ ତଳର । ମୁଁ ଥିଲି ବଡ଼··· ।

ଦାସେ ଖାଲି ମୁରୁକି ମୁରୁକି ହସୁଥିଲେ । କହୁଥିଲେ, କ'ଣ ବନା ! ଲୋଭ ହଉଚି ? ସବୁକୁ ମିଶେଇ ଦେଲେ ତିନି ଚାରିଶହ ଟଙ୍କାର ହବନି । ଦିନକର ରୋଜଗାରରୁ ବି ନଅଣ୍ଟ ! କହୁନ, ଦେଖେଇ ହେବାକୁ ଯଦି ଇଚ୍ଛା, ଅଳ୍ପ ଲେଖିଲେ, ବାଆଲିକ ଅସି କୋଡ଼ିଏ ପଚିଶ ଭରିର ହାର ପହଞ୍ଚିଯିବ ! ମାସେ ରଖ, ଦିମାସ ରଖ, କେହି କିଛି କହିବେନି; କିନ୍ତୁ ଫେରେଇ ଦେବାକୁ ପଡ଼ିବ ।

ବି.ଡ଼ି. ଓ. ଙ୍କ ସ୍ତ୍ରୀ (ଯାହାକୁ ବନାଦେବୀ ଭାଉଜ ବୋଲି ଡାକୁଥିଲେ) ଦେଇଥିବା ପ୍ରେଜେଣ୍ଟେସନ୍ ଭ୍ୟାନେଟି ବ୍ୟାଗଟି ବନାଙ୍କ ମନକୁ ବେଶ୍ ପାଇଥିଲା । ଅଲ୍ଲଅ ପାଖକୁ ଆଣି, ଖୋଲିଖୋଲି ସେ ଥରକୁ ଥର ଦେଖୁଥିଲେ । ଦାସଙ୍କ କାନକୁ ଗଳିଭଳି ପାଖରେ ବସିଥିବା ପଡ଼ୋଶୀଘର ହେମନାନୀଙ୍କ କହୁଥିଲେ—ଦେଖିଲ ନାନୀ, ସୁନ୍ଦରଟିଏ ହେଇନି ? ସ୍ୱାଙ୍କି ଇଥିରୁ ଗୋଟିଏ ଅଣ୍ଟିଦିଅ ବୋଲି କହି କହି ତୋଟି ଶୁଖିଗଲା, କ'ଣ ହେଲା ? ଇଥିରେ ପଇସା, ଏପାଖେ ନୋଟ, ଅଉ ଏପଟେ ସ୍ଲେଟ ପାନିଆଟିଏ, ଦର୍ପଣଟିଏ; ଏ ସ୍ଲେଟ ପାକେଟଟିରେ ଓଠଲଗା ଲିପଷ୍ଟିକଟିଏ ରହନ୍ତା, ହାତରେ ଝୁଲେଇ ଝୁଲେଇ ଯାଆନ୍ତି । ସିଏ କମିତ ମର୍ଯ୍ୟାଦା !

ହେମନାନୀ କହନ୍ତି, କାଲୋ ତୋ ଭାଗ୍ୟରେ ତ ନାହିଁ, ଚାହିଁଲେ କ'ଣ ହେଇଯିବ ?

ବାହାଘର ସରିଲା । ବରପକ୍ଷର ଆଳପଣାକୁ ଆଣିଥିଲେ କେତେଖଣ୍ଡା ଛଡ଼ା, କମଳାକୋଳି, ଅଉ କେତୋଟି କାବୁଲି କଦଳୀ—ଯେଉଁ କଦଳୀର ଉପର କଞ୍ଚା କଞ୍ଚା ଦିଶେ, ଭିତରଟା କିନ୍ତୁ ପାଚିଲା । କିଏ କେତେବେଳେ ଟୁଙ୍ଗି ଦେଲେ, ଦାସଙ୍କ ଜିଦ ଭାଙ୍ଗିଲା, ସବୁ ଠୁଙ୍ଗା ସରିବା ପରେ ।

ତା ପରେ ଚାଭୁ ଅଧିକୁ ଫୁଲସଜ୍ଜା, ବରକନ୍ୟାଙ୍କ ଆଶୀର୍ବାଦ, ଶ୍ଳୋକ ବୋଲି ଅଧ୍ୟାପୁ । ସେ ଗୋଟାଏ ପାଲା…।

...ସୁସ୍ମିତାଦେବୀ ଦାସଙ୍କ ତୁଣ୍ଡକୁ ଚୁହିଁ ରହିଥିଲେ । ଘରେ ଠିକଏ କଥାରେ ଏତେ ଶ୍ଳୋକ ବାହାରେ, ଇଲ୍ଲେ ଅଥବା ଗୋଟିଏ ବାହାରିବ ପରା ! କିନ୍ତୁ ନିଜେ ଦାସେ ସେତେବେଳକୁ ସବୁ ଭୁଲି ଯାଇଥିଲେ । ଶୀତରେ ଥୁରୁ ଥୁରୁ ହୋଇ ସେ ଗରମ ଖୋଜୁଥିଲେ ।

ରାତ ପାହିଲା । ବାହାଘରବାସୀ ବେଦମୁହଁ ପୋଡ଼ା ପରି, ଘରଦ୍ୱାର ବଡ଼ ଶ୍ରୀହୀନ ଦେଖାଯାଉଥିଲା ସେ ଦିନ । କିଏ କୁଆଡ଼େ ଚାଲିଗଲେ । ହାଉଯାଉ ଗଲା । ବରଯାତ୍ରୀ ଗଲେ, ଖାଲି ରହିଲା ଅଇଁଠା ହଣ୍ଡାଗୁଡ଼ା, ଅଧା ପୋଡ଼ା ନିଆଁ ଖୁଣ୍ଟାଗୁଡ଼ା ।

ଦାସେ ସେ ଦିନଟିଯାକ ବୁଲି ଶ୍ୱଶୁରଘର ଗାଁର ଉପର ଆକାଶଟାକୁ ଦେଖୁଥିଲେ । ଭାରି ନିର୍ମଳ ! ଗଛଗୁଡ଼ାକ ଭାରି ସବୁଜିଆ, ପଡ଼ିଆଗୁଡ଼ାକ ପ୍ରଶସ୍ତ । ପୋଖରୀଗୁଡ଼ାକ ଖାଲି ଖାଲି । ବାଡ଼ି ଖାତଗୁଡ଼ାକରେ ତେଲୁଣୀପୋକ ଭଳି ମାଛିକିନିଆଁ ମେଞ୍ଚା ମେଞ୍ଚା । ରାସ୍ତାଗୁଡ଼ାକ ଧୂଳିଆ ଧୂଳିଆ । ଗୁଡ଼ଲ ବୋଟିରୁ ମୁଠାଏ ଗୁଡ଼ଲ ଧରି ଦେଖିଲେ, ସଫାସଫା, ସରୁ ସରୁ କିନ୍ତୁ ମୁଠାଏ ଗୁଡ଼ଲ ଭିତରେ ଦିଅଣ୍ଡା ଦଶଟା ଭରି କରକରିଆ ଗୋଡ଼ି । ମନେ ମନେ ଭାବୁଥିଲେ—ଏ୍ୟାକୁଇ ଯିଏ ଖାଏ, ସେ କ'ଣ କେବେ ଡାଲମ୍ବଦାନ୍ତ ହୋଇପାରେ ! କିନ୍ତୁ ରିନାଦେବୀଙ୍କ ଦାନ୍ତଗୁଡ଼ିକ ତ ଭାରି ସରୁ ସରୁ । ହୁଏତ ସେ ଡୋମିସାଇଲ୍ଡ ହେଇଥିବେ ।

ଦାସଙ୍କୁ ସବୁଠୁ ଭଲ ଲାଗିଥିଲା, ଏହି ନୀଳ-ନିର୍ମଳ ଆକାଶ ତଳର ଲୋକଗୁଡ଼ାକଙ୍କ ବଙ୍କା ବଙ୍କା ଭାଷା । ଏ ଭାଷା ଶୁଣି ତାଙ୍କର ମନେ ପଡ଼େ ଦଶ ପନ୍ଦର ବର୍ଷ ତଳର କଥା ।

ବଂଶୀ ବୋଲି ଗୋଟିଏ ପୂଜାରୀ ଥିଲା ତାଙ୍କର । ଖରାଦିନ । ଝିଅପିଅ ସାରି ଦାସେ ଗଲେ ଛାତ ଉପରକୁ ଶୋଇବା ପାଇଁ । ବଂଶୀ ଥଣ୍ଡା ପଡ଼ିବ ବୋଲି ତଳେ ଶୁଏ । ଠିକ୍ ଅଧରାତବେଳକୁ ହଠାତ୍ ଡାକ ପକାଇଲା, "ଏ ବୁଆ ଜୁଇ, ଏ ବୁଆ ଜୁଇ"।

ଏ ବୁଅ ଜ୍ଳୁର ବୋଲି ଦାସଙ୍କ କାନରେ ପଡ଼ୁଥାଏ, କିନ୍ତୁ ସେ କିଛି ବୁଝିପାରୁ ନ ଥିଲେ । ହଠାତ୍ ସେପେଇ ଘରଜପରେ ଲେଲିହାନ ଅଗ୍ନିଶିଖାକୁ ଦେଖି ବୁଝି ପାରିଲେ ସେ, ଜ୍ଳୁର ବୋଇଲେ ନିଆଁ । ବଙ୍ଗଳା-ହିନ୍ଦୀ-ଓଡ଼ିଆ ମିଶା ଏଇ ଭାଷାକୁ ବୁଝିବା, ଶିଖିବା ପାଇଁ ବହୁତ ଚେଷ୍ଟା କରିଥିଲେ ସେ, ଏ ପର୍ଯ୍ୟନ୍ତ ପାରିଲେ ନାହିଁ ।

ଶ୍ୱଶୁରଘର ତ ନୁହେଁ, ଦାସେ ଭାବୁଥିଲେ ଏଇଟା ଗୋଟାଏ ରାଜଜ୍ଅସ । ମଣିଷ ଏଠି ଅଭ୍ୟାସରେ ବଢ଼େ । ସକାଳୁ ସକାଳୁ ଚାହା । ଟିକିଏ ମିଠା କମ୍ଭା ଟିକିଏ କଡ଼ା ନ ହେଲେ, କପେ ପିଇଦେବା ପରେ ଶାଳକ କହନ୍ତି, ଏଇଟା ଭଲ ହେଲନି, ଆଉ କପେ ହୁଅନ୍ତା ଯଦି... ? ମୁହଁଧୁଆ, ଦାନ୍ତଘଷା, ଝାଡ଼ାଫେରା ସାଙ୍ଗକୁ ଚାହା କପେ ଦୁ'କପ ନିତ୍ୟ ନୈମିତ୍ତିକ ଭୋଗ । ସେତକ ନ ହେଲେ କୁଆଡ଼େ, ଏ ଘରର ଯୁବରାଜ, ଟିକାୟତ, ରାଜକୁମାମାନଙ୍କର ଝାଡ଼ା ସଫା ହୁଏନା ।

ଚାହାର ମହାତ୍ମ୍ୟ ଯିମିତ ଏ ଘରେ ମାଦଳାପାଞ୍ଜି ଭଳି ଅବହମାନକାଳରୁ ଲେଖାଚାଲିଚି । ଚା କମିତ ଚଥର କଲେ କମିତ ଲାଗେ, ଚାହା ଖାଇଲେ ଦେହକୁ କେଉଁ ଭିଟାମିନ ମିଳେ, ବ୍ଲଡ଼ପ୍ରେସର କମିତ କମେ, ମସଲସ୍ ବଢ଼େ, ଏଇସବୁ କଥା ଏହି ପାଞ୍ଜି ଖୋଲିଲେ ଜଣାଯାଏ । ତା ଛଡ଼ା ପାନଖିଆ । ସେ ଛଅଟି ଶାଳୀ ମଧ୍ୟରୁ ଜଣଙ୍କ ପରେ ଜଣେ ପାନ କରି ଦେଇଥାଆନ୍ତି । ସକାଳୁ ଉଠୁ ଉଠୁ ଜଣେ ସେରେ ହେବ ଗୁଆକୁ ଅଗରେ ଧରି କାଟି ବସେ । ପୁଣି ମହାର୍ଦ୍ଧ କୁଡ଼ୁଆ ଭଳି ଏତେ ବଡ଼ କୁଡ଼ୁଆଟାକରେ ଏତେ ଚୂନ ! ପ୍ରଦର୍ଶନୀ ପାନ ଦୋକାନଠାରୁ ଏଠା ପାନପସରା ଟିକିଏ ବଡ଼ ହେବ ସିନା, କୌଣସି ପରିମାଣରେ ଛୋଟ ହେବ ନି । ଏ ଘର ଗାଈଗୁହାଳରେ ଥିବା ମଣିଷରୂପୀ ପାଳିତପଶୁଗୁଡ଼ିକର କାମ ହେଲା ସକାଳୁ ଚେପଜ ପିଇଲା ଭଳି କପ୍ କପ୍ କରି ଚାହା ପିଇବା, ଘାସ

ଶ୍ରୈବାଇଲ ଭଲ ପାନ ଶ୍ରୈବାଇବା, ଭଲ ମନ୍ଦ କର ଥାଳିଏ ଥାଳିଏ ଗିଳିବା ।

ସ୍ୱାତହେଲେ………

ସେ ଅନ୍ୟ ଏକ ବ୍ୟାପାର । ସୁସ୍ମିତାଦେବୀ ଯାହା ଏ ଯାଏଁ ଲୁଚେଇଥିଲେ, ଦାସେ ଆଜି ତାହା ନିଜେ ଅନୁଭବ କରିଗଲେ ।

ଶୀତଦିନ କଥା । କୁଅର-ଘର ବନ୍ଦ ହୁଏ । ଗୋଟିଏ ଗୋଟିଏ ବେଢେଇ ଧୋଢ଼େଇ ହେଇ ଏଇ ସ୍ୱାଜ୍ୟର ମାଜବ-ମାନେ ବସନ୍ତି । ସିଆଡ଼ୁ ସ୍ୱାଜୁବାବୁ, ଏପଟୁ ବେଣୁ ପଣ୍ଡିତେ ଆସି ଜୁଟନ୍ତି । ବେଣୁ ପଣ୍ଡିତେ କୁଅଡ଼େ ଦାସଙ୍କ ଶ୍ୱଶୁରଙ୍କ ସ୍ତ୍ରୀଙ୍କ ଭାଇ ! ଏ ଦହେଁ ଯିବାବେଳକୁ ସ୍ୱାତବାର ବାଜେ । ସ୍ୱାଜୁବାବୁ ଏ ମୂଲକର ବଡ଼ ହାକିମ । କି ହାକିମ—ଦାସେ ଏ ଖବର ରଖିପାରି ନାହାନ୍ତି । ସେ ଯାହାହେଉ… ମଝିରେ ବଡ଼ ଜମେଇ । ତାକୁ ଘେରି ବସନ୍ତି ଶ୍ୱଶୁର ସମେତ ସେଇ ଦୁଇଜଣ । ଶାଶୁ ସିଆଡ଼େ ଗେଷ୍ଟେଇରେ ବ୍ୟସ୍ତ ଥାଆନ୍ତି । ମଝି ମଝିରେ ଆସନ୍ତି ଯେତେବେଳେ ଶ୍ୱଶୁର ଡାକ ପକାନ୍ତି, "ହଇହେ ପାଟି ଶୁଖିଗଲାଣି, ପାନ ଦବନି ?"

ତା'ପରେ ଗୃଲେ ସ୍ୱଜନୀତି । ଆରମ୍ଭ ହୁଏ—ପ୍ରଥମେ ସେଇ ଘରକୁ—ତା ପରେ ସେ ମୂଲକର । ସେଇଠୁ ଓଡ଼ିଶା, ଓଡ଼ିଶାଠୁ ଭାରତ, ଭାରତଠୁ ପୃଥିବୀ, ପୃଥିବୀରୁ ମଙ୍ଗଳଗ୍ରହ, ଚନ୍ଦ୍ରଆଦି ଉପଗ୍ରହ ବିଷୟ ।

ବେଣୁ ପଣ୍ଡିତେ ଆରମ୍ଭ କରନ୍ତି କାଶ୍ମୀର କଥା କ'ଣ ହେଲା ? ସାମାନ୍ୟ ଜ୍ୟୋତିଷୀ ଜାଣିଥିବା ସ୍ୱାଜୁ ହାକିମେ କହନ୍ତି—ଏଇ ମାସକ ଭିତରେ ଯୁଦ୍ଧ ଲାଗିଯିବ । ବେଣୁ ପଣ୍ଡିତେ କହନ୍ତି, କଦାପି ହୋଇ ନ ପାରେ । ଯୁଦ୍ଧ ଏ ନେହେରୁ ସରକାର କେବେହେଁ କରେଇ ଦେବେ ନି । ଏମାନଙ୍କର ସବୁ ଶାନ୍ତି ନୀତି ।

ଶ୍ୱଶୁରେ କହନ୍ତି, ଅହେ ଶାନ୍ତି କଣ ? ଦେହରେ ଗୃହଅଡ଼ୁ ଡେଣ୍ଟା ବସିଲାଣି, ଇଆଡ଼େ ଚୀନ, ସିଆଡ଼େ ପାକିସ୍ଥାନ, ତା ସାଙ୍ଗକୁ ପଡ଼ି ଗାଇ । ନେହେରୁ ଯୁଦ୍ଧ କରିବେନି ଯିବେ କୁଆଡ଼େ ? ବେଣୁ ପଣ୍ଡିତେ କହନ୍ତି, ଭାରତର କ'ଣ ଏତେ ଶକ୍ତି ଅଛି ? ଚୀନକୁ ହଟେଇ ପାରିବ ?

ରାଜୁ ହାକିମେ କହନ୍ତି, ସେ ଯାହାହେଉ, ଗଣନାରୁ ଯାହା ବାହାରିଲା, ସେଇ କଥା କହୁଛି । ଯୁଦ୍ଧ ନ କରି ନେହେରୁ ଯିବେ କୁଆଡ଼େ ?

ସେଇଠୁ ଆରମ୍ଭ ହୁଏ ପାଟିତୁଣ୍ଡ ! ଠିକ୍ ସିଏ ଏକ ଗୋଟା ଯୁଦ୍ଧଭଳି । କିଏ ନିଆଁ ଖୁଣ୍ଟା ଉଠାଏ ତ, କିଏ ଅଧା ଗରମ ଚାହା କପ ଉଠାଇ ଠିଆହୁଏ । ଏ ପାଟିତୁଣ୍ଡ ମଧ୍ୟରେ ପାନଖିଆ କଥା କିନ୍ତୁ କେହି ଭୁଲି ନ ଥାଆନ୍ତି···ଶ୍ୱଶୁର ପାଟି କରନ୍ତି, ମୂର୍ଚ୍ଛନା ! କାଲେ ପାନ ଭାଙ୍ଗି ଆଣିଲୁ ?

ସୁସ୍ନାତାଦେବୀ ବନାମ ମୂର୍ଚ୍ଛନାଦେବୀ ସେତେବେଳେ ଆର ଘରେ ଋଷି ଜାଳି ଦାସଙ୍କଠାରୁ ଘରର ଜମାଖର୍ଚ୍ଚ ହିସାବ ନେଉଥାଆନ୍ତି । ବାପାଙ୍କ ପାଟି ଶୁଣି, ସେ ଛଅ ଭଉଣୀଙ୍କ ମଧ୍ୟରୁ ଜଣକୁ କହନ୍ତି, ଗଲୁ ଲୋ ଢଙ୍କିଢ଼ି ! ( ଢଙ୍କିଢ଼ି ଭଳି ଦିନସାରା ଇଠିକି ସେଠିକି ଘୂରେ ବୋଲି ବାପା ତା ନାଁ ଦେଇଥାଆନ୍ତି ଢଙ୍କିଢ଼ି ) ବାପାଙ୍କ ପାଇଁ ପାନ ଭାଙ୍ଗିବୁ । ଢଙ୍କିଢ଼ି ନାନୀର ଆଦେଶକୁ ଅମାନ୍ୟ କରିପାରେନା । ଏଇ ନାନୀ କୁଆଡ଼େ ତାକୁ ଭଲ ବରଟିଏ ଦେଖେଇ ବାହା କରାଇ ଦେବ ବୋଲି କହୁଦିନୁ ପ୍ରତିଶ୍ରୁତି ଦେଇଆସିଛନ୍ତି; ସେଇଥିପାଇଁ ସେ ତାଙ୍କର ବୋଲି ମାନେ । ପାନ ଭାଙ୍ଗିବା ପାଇଁ ଧୋଡ଼ିଆଦୋଢ଼ି ହୋଇ ବାହାରେ ସେ ।

ପାନ ଖିଲି ଖଣ୍ଡେ ଖଣ୍ଡେ ପାଟିରେ ଗୁଞ୍ଜି ଦେଇ ତିନି ବନ୍ଧୁଙ୍କ ମଧ୍ୟରେ ପଡ଼େ ଅନ୍ତର୍ଜାତିକ ରାଜନୀତି କଥା । ଋଷ ସହିତ

ଚୀନର ଯଦି ନ ପଡ଼େ, କଙ୍ଗୋରେ ଯଦି ଜାତିସଂଘବାହୀ ସୈନ୍ୟ-ମାନେ ହଟି ଯାଆନ୍ତି, ପାକିସ୍ତାନ ଯଦି ଚୀନ ସହିତ ମେଣ୍ଟ ବାନ୍ଧେ, ତାହାହେଲେ ବିଶ୍ୱଶାନ୍ତିରକ୍ଷା ଅସମ୍ଭବ ହୋଇପଡ଼ିବ ।

ରାଜୁ ହାକିମେ କହନ୍ତି, ପଡ଼ିବ କ'ଣ ମ, ପଡ଼ିଗଲାଣି । ଏହି ବର୍ଷେ ଦି'ବର୍ଷ ଭିତରେ ମଣିଷ ଜାତିଟା ଧ୍ୱଂସ ପାଇଯିବ । ଈଶ୍ୱର ଜାତକରେ ସେୟା ଅଛି । କ'ଣ ପଣ୍ଡିତେ ! ଠିକ ନୁହେଁ ?

ପଣ୍ଡିତେ ମୁଣ୍ଡ ହଲେଇ କହନ୍ତି, ହଁ ସେଇ କଥାତ ! ଦାସଙ୍କ କାନରେ ଏକଥା ପଡ଼େ । ସୁସ୍ମିତାଦେବୀଙ୍କୁ କହନ୍ତି, ଜମାଖର୍ଚ୍ଚ ହିସାବଟା ଏ ରାତିକ ଭିତରେ ତୁଟେଇ ଦିଅ ନା । ଅଧ ମାସକ ପରେ ତ ତମେ ଘରକୁ ଯିବ, ସେଇଠି ତୁଟେଇ ଦେବା ।

ସୁସ୍ମିତାଦେବୀଙ୍କ ଲାଜମାଡ଼େ । ବଡ଼ ପାଟିରେ କହି ପାରନ୍ତି ନା । ଅଖିକି ଠାରି କହନ୍ତି, ଅଧ ଘଣ୍ଟେ ଦି ଘଣ୍ଟା ଇମିତି ଅଛନ୍ତି ରହିଥାଅ, ନଇଲେ ବାପା ଭଲେ କହିବେ, କଥାବାର୍ତ୍ତା ସରିଲା ପରି—ବାବୁଙ୍କୁ କହ, ଆଉ ଘରେ ଶେଯ ପଡ଼ିଚି, ଯିବେ ଶୋଇବେ ।

ସୁସ୍ମିତାଦେବୀଙ୍କର ଇଚ୍ଛା—ଦାସେ ରାତିଟି ଯାକ ତାଙ୍କର ପାଖରେ ଜାକିଜୁକି ହୋଇ ବସନ୍ତୁ ବା ଶୁଅନ୍ତୁ; କିନ୍ତୁ ରୁହନ୍ତୁ । କିନ୍ତୁ ଦାସଙ୍କର ଏଡ଼େବଡ଼ ରାଜନୀତି ଚର୍ଚ୍ଚାକୁ ଛାଡ଼ି ଦେବାପାଇଁ ଇଚ୍ଛା ନୁହଁ ।

ଏଇ ରାଜନୀତିହିଁ ତାଙ୍କୁ କଲେଜ ଅଧ୍ୟାପକଙ୍କୁ ଟାଣି ରଖିଥିଲା ସେ ବାହା ହେବଯାଏଁ—ଦୀର୍ଘ ଦଶବର୍ଷ । ଥରେ ଥରେ ଲାଲ ପତାକା, ଗୁହାରି ଡ଼ିବା, ଲିଫ୍ଲେଟ ବାଣ୍ଟା, ବକ୍ତୃତା ଦିଅ, ନିର୍ବାଚନ ଲଢ଼େଇ ସାଙ୍ଗକୁ ଦିନ ଦିନ ଧରି ଭୋକ ଉପାସରେ ଯ୍ୱା ତା ବୁଆରମୁହଁରେ ପଡ଼ିରହିବା କଥା ମନେପଡେ । ଆଖିରୁ ଲୁହ ଝରି ପଡ଼େ । ମନେ ମନେ ଭାବନ୍ତି, ଅନୁଶୋଚନା

କରନ୍ତି । କହନ୍ତି, ଅଜାଣତରେ ନିଜକୁ ନିଜେ କେତେ଼ ଠକାଟେ ଠକେଇଲେ ସେ । ଏଇ ନିଧି ସାହୁ ଯିଏ କି ଅଠଦିନ ତଳେ ତାଙ୍କର ଆଖି ଆଗରେ କନ୍‌ଭୋକେସେନ୍‌ରେ ବୁକୁକୁ ଫୁଲେଇ ଡକ୍‌ଟରେଟ ଉପାଧି ନେଲା, ଏଇ ଅରବିନ୍ଦ ଦାସ—ଯାହା ସାଙ୍ଗରେ ସେ ବର୍ଷ ବର୍ଷ ଧରି ଗୁନ୍ଦା ଡ଼ିବା ଧରି ଦୁଆର ଦୁଆର ଭିକ ମାଗୁଥିଲେ, ସିଏ ଆଜି ଲାଲ ମର୍ସିଡେସ୍‌ ଗାଡ଼ି ଧରି, ପଛରେ ସ୍ତ୍ରୀକୁ ବସାଇ ପିନ୍‌ ପିନ୍‌ କରି ଚାଲିଯାଉଛି ! ଯାହାଘରେ ଲକ୍ଷ ଲକ୍ଷ ଟଙ୍କାର ଆସବାବ ପତ୍ର, ସମସ୍ତେ ଥିଲେ ତାଙ୍କର ସହକର୍ମୀ । ସମସ୍ତେ କହୁଥିଲେ, ଆମେ ସୋସାଲିଜମ୍‌ କରିବୁ, ଆଦର୍ଶ ଆମ ଆଗରେ ବଡ଼, ପଇସା କିଛି ନୁହେଁ, କଲେଜ ଶିକ୍ଷା ଗୋଟାଏ ଫେସନ୍‌ । ସେମାନେ ଆଗଭୁଷ୍ଟ ଆଦର୍ଶକୁ ଖସିଯାଇ ଆଗକୁ ଆଗକୁ ମାଡ଼ି ଚାଲିଲେ, ଆଉ ଇଏ ଆଦର୍ଶକୁ ଧରି ପଛକୁ ପଛକୁ ଘୁଞ୍ଚି ଚାଲିଲେ, ଏକାବେଳକେ ତଳିତଳାନ୍ତ ହେବାଯାଏଁ ।

ଇଏ ସେଇ ପଲିଟିକ୍‌ସ...ଦାସେ ଛାଡ଼ିଦେଇଥିଲେ ମଧ୍ୟ ପଲିଟିକ୍‌ସ ତାଙ୍କୁ ଛାଡ଼ିଦେଇ ପାରିନି । ପେଟରେ କଲିକ୍‌ ସାଥିରେ ସିଏ ଏକ କ୍ରନିକ୍‌ ରୋଗ ଭଳି ରହି ଆସିଛି । ଦେହର ଚମଡ଼ାରେ ପଲିଟିକ୍‌ସର ରଙ୍ଗ ନ ଥିଲେ ମଧ୍ୟ ଦେହର ରକ୍ତରେ ତାର ଜୀବାଣୁ ବଣ୍ଡା • ବାନ୍ଧି ରହିଛି ଠିକ୍‌ କେଞ୍ଚୁଆ ଭଳି । ଥରେ ଥରେ ଏଇ କେଞ୍ଚୁଆ ତାଙ୍କୁ କାମୁଡେ । ଦେହ ଥରି ଉଠେ...ତାଙ୍କ ମୁହଁରେ ବଳ ବଳ ହୋଇ ସେଗୁଡ଼ାକ ବାହାରି ପଡ଼େ ।

ଦାସେ ଉଠିଯିବାକୁ ଉଦ୍ୟତ ହୁଅନ୍ତି । ସୁସ୍ମିତାଦେବୀ କହନ୍ତି, ଯିଅଡ଼େ଼ ଯାଅନି । ବହୁ କଷ୍ଟରେ ମୁଁ ତମକୁ ଏଠିକି ଘୁଞ୍ଚେଇ ଘୁଞ୍ଚେଇ ଆଣିଛି । ଶୁଣୁଚ ତ ମଣିଷ ଗୁଡ଼ାକର ଆୟୁଷ ମୋଟେ ଆଉ ଦି ବର୍ଷ । ସେଥିରେ ପୁଣି ତୁମ ଭଳି ଜଣେ ଅମଣିଷ...ମୁଁ ବୋଲି ଅଣ୍ଡା, କଦଳି, ଦୁଧ ଦେଇ ଦେଇ ଅଟକେଇ ରଖିଛି, ନଇଲେ କୋ ଦିନଠୁ...... ।

ସୁସ୍ମିତାଦେବୀ ଓ ସ୍କୁଲ ହାକିମଙ୍କର ଦ'ବର୍ଷ ଅପୂର୍ବର ଦୀର୍ଘଜୀବନ କାମନା, ଦାସଙ୍କୁ ଠିକ୍‌ଏ ଆଶ୍ୱାସନା ଦେଇଥିଲା । ଦ'ବର୍ଷ ବୋଇଲେ କେତେଦିନ, କେତେ ଘଣ୍ଟା ସେ ମନେ ମନେ ଗଣି ଗଣି ସୁସ୍ମିତାଦେବୀଙ୍କୁ କହିଲେ—ବୁଝିଲ ରନା, ଦ' ବର୍ଷ କାଳ !

ତନ୍ମ ବନ୍ଧୁଙ୍କ ଭିତରେ କଥାବାର୍ତ୍ତା ପଡ଼ିଥାଏ...ଦ ବର୍ଷ ଯଦି ବଞ୍ଚୁ, ତାହାହେଲେ ଏତେ ଚିନ୍ତା କାହିଁକି ? ଯାହା ଅଛି ଅଛୁ, ସେତକକୁ ବିକିଭାଙ୍ଗି ଖାଇଲେ ତ ଆରାମ ।

ଦାସଙ୍କ ମନେ ପଡ଼ିଲା, ପନ୍ଦରବର୍ଷ ତଳର କଥା । ସେ ସେତେବେଳେ ହାଇସ୍କୁଲ ଛାତ୍ର । ତାଙ୍କ ଆଗ ଦୁଆରରେ ନାରଣ ମହାପାତ୍ର ବୋଲି ଠିକ ଏଇ ପଣ୍ଡିତଙ୍କ ଭଳି ଜଣେ ଡେଙ୍ଗା ପଣ୍ଡିତ ଥିଲେ । ସେତେବେଳେ ଶୁଣାଗଲା, ଏଇ ମାସକ ଭିତରେ ପୃଥିବୀ ପ୍ରଳୟ ହୋଇଯିବ । ପଣ୍ଡିତେ ପାଞ୍ଜି ଦେଖି ଗଣିଲେ, ଠିକ୍ କଥା । ପ୍ରଳୟ ସୁନିଶ୍ଚିତ । ଘରେ ସ୍ତ୍ରୀଙ୍କୁ ଓ ଏକମାତ୍ର କନ୍ୟା ରେବତୀକୁ କହିଲେ, ମତେ ଟୁଟା, କାର୍ପି ବୋଲି କହୁଚ ପରା, ଦେଖ କାଲିଠୁଁ ......।

—କାଲିଠୁ ଖାଲି ତାଙ୍କ ସ୍ତ୍ରୀ ଓ କନ୍ୟା ଦେଖିଲେ ନାହିଁ ତାଙ୍କ ଗାଁ ଗୋଟାଯାକ ଲୋକ ଦେଖିଲେ, ମିତବ୍ୟୟୀ ପଣ୍ଡିତେ ହଠାତ୍ ମୁକ୍ତହସ୍ତ ହୋଇ ପଡିଚନ୍ତି । ଦାଣ୍ଡକୁ ଘିଅବାଲା ଆସିଲା ତ, ଡାକ ପଡ଼ିଲା, ଆଉ କାହା ପାଖରେ ଦେବା ଦରକାର ନାହିଁ, ଯାହା ଆଣିଚୁ ଏଇଠି ଦେଇ ଯା । ଘରେ ସ୍ତ୍ରୀକୁ ବରାଦ ଦେଲେ, ଆଜି ଅରୋଷା ହେବ । ଝିଅପାଇଁ ଦାମିକା ଶାଢ଼ୀ, ବ୍ଲାଉଜ, ସ୍ତ୍ରୀ ପାଇଁ ଚଟି, ସ୍ନୋ, ପାଉଡ଼ର । ସେତେବେଳେ ଯାହା ଯାହା ବଜାରରେ ଉପଭୋଗ୍ୟ ଜିନିଷ ମିଳୁଥିଲା, ପଣ୍ଡିତେ ଘରେ ଆଣି ରୁଣ୍ଡ କଲେ । ଗୋଟିଏ ଗୋଟିଏ ମାସକ ଭିତରେ ସବୁ ସଞ୍ଚୟଧନ ଶେଷ । ଖାଲି ରହିଲା ଘର ଖଣ୍ଡିକ, ସେତକ ମଧ୍ୟ ବିକା ସରିଲା । ଠିକ୍ ପ୍ରଳୟ ଆସିବାର ପୂର୍ବଦିନ, ଅତି ଆଦରର ଅମୃତଭୋଗଟି

ମଧ୍ୟ ହସ୍ତାନ୍ତରିତ କରିଦେଇ, ପଢ଼ଶାଘର ମକରଧ୍ୱଜ ମହାପାତ୍ରଙ୍କୁ କହିଲେ—ବୁଝିଲ ମକର, କାଥିଲ ପ୍ରଳୟ, ସକାଳୁ ଉଠିଲାବେଳକୁ କିଛି ନ ଥିବ । ମୁଁ ଚାହେଁ ଶୂନ୍ୟ ହସ୍ତରେ ମରିବାକୁ । ଯାହାକୁ ବଳି ପୁଣ୍ୟ କିଛି ନାହିଁ ।

—ପୃଥିବୀରେ ପ୍ରଳୟ ଆସିଲା କି ନାହିଁ ଅନ୍ୟମାନେ କେହି ଜାଣି ପାରିଲେ ନାହିଁ, କିନ୍ତୁ ପଣ୍ଡିତେ ଜାଣିଲେ । ସତକୁ ସତ ସକାଳ ପାହିଲାବେଳକୁ, ଘରେ କେହି ନାହାନ୍ତି । ପଣ୍ଡିତେ ଶୂନ୍ୟ ହସ୍ତରେ ଗାଁ ଛାଡ଼ି ସ୍ତ୍ରୀକନ୍ୟାକୁ ଧରି ପୁଣ୍ୟ ଅର୍ଜନ କରିବା ଲାଗି ସ୍ୱର୍ଗକୁ ଖୋଜି ଖୋଜି ଚାଲିଗଲେ କଳାହାଣ୍ଡି ପର୍ଯ୍ୟନ୍ତ ।

ସୁସ୍ମିତାଦେବୀ ପଚାରିଲେ, ସେମାନେ ସିନା ତିନିଜଣ । ଦୁ' ବର୍ଷ ପରେ ଯେଉଁ ପ୍ରଳୟ ଆସିବ, ସେତେବେଳେ ପୃଥିବୀର ଏତେଗୁଡ଼ାଏ ମଣିଷ କୁଆଡ଼େ ଯିବେ ?

—କାହିଁକି ମଙ୍ଗଳ, ଶୁକ୍ର, ବୁଧ, ଚନ୍ଦ୍ର ଆଦି ଦେଶକୁ ତ ବାଟ ଫିଟିଗଲାଣି । ଗୁଡ଼ାଏ ଲୋକଙ୍କୁ ଆମେରିକା, ଆଉ ଗୁଡ଼ାଏ ଲୋକଙ୍କୁ ରୁଷଧରି ଚାଲିଯିବ ।

—ଆମେରିକା ରୁଷ ଭିତରେ ପଡ଼ି କଳିକଜିଆ ?

—କଳିକଜିଆ ସେଇଠି ଲାଗିବ । ସେଠି ପୁଣି ଯେତେ-ବେଳେ ପ୍ରଳୟ ଆସିବ, ସେତେବେଳକୁ ଭଗବାନ ପୃଥିବୀର ଅଇଁଠାପତ୍ର, ଅଳିଆ ଆବର୍ଜନାତକ ସଫା କରିଦେଇ ସାରିଥିବେ । ପୁଣି ସେ ପୃଥିବୀକୁ ଡାକି ନେଇ ଆସିବେ । ଆଗେ ସିନା ଖାଲି ଏଇ ପୃଥିବୀଟାହିଁ ଗୋଟାଏ ବସବାସର ସ୍ଥାନ ହୋଇଥିଲା ବୋଲି ଭଗବାନଙ୍କ ପକ୍ଷରେ ଗୋଟାଏ ସମସ୍ୟା ହୋଇଥିଲା, ଏବେ କ'ଣ ଆଉ ସେ ସମସ୍ୟା ଅଛି

ସୁସ୍ମିତାଦେବୀ ମନେ ମନେ ଭାବୁଥିଲେ, ସେ ତାଙ୍କ ଅଙ୍ଗ୍ଲୋଇଣ୍ଡିଆନ କୁକୁରଟା ନାଁ ସ୍ପୁଟ୍ନିକ ଦେଇ ଠିକ୍ କରିଛନ୍ତି । ଯେଉଁମାନେ ସ୍ପୁଟ୍ନିକର ସ୍ରଷ୍ଟା, ସେମାନେ ପ୍ରଥମେ

ମଙ୍ଗଳ ଉପଗ୍ରହ ବା ଯେଉଁ ଗ୍ରହକୁ ହେଉ ଆଗ ଯିବାକୁ ନିଶ୍ଚୟ ଚାନ୍ସ ପାଇବେ । ଠିକ୍‌ଏ ଆଗରେ ଗଲେ, ଜମିର ଦର କମ୍‌ଥିବ । ଅନ୍ତତଃ ଏକର ଚାରିଶହ ଟଙ୍କାରୁ ତ ବେଶି ନ ଥିବ ।( ଚାରିଶହ ଟଙ୍କାଟା ତାଙ୍କର ହଠାତ ମନେ ପଡ଼ିବାର କାରଣ ସେ ନିକଟରେ ଘର କରିବେ ବୋଲି ଗୋଟିଏ ଜାଗାକୁ ଏକର ଚାରିଶହ ଟଙ୍କାରେ କିଣିଚନ୍ତି ) । ନଚେତ ପରେ ଲକ୍ଷ ଲକ୍ଷ ଟଙ୍କାକୁ ଉଠିଗଲେ, ହଇରାଣ ହେବେ । ତାଙ୍କର ଇଚ୍ଛା, ସାତ ଆଠ ବଖରା ଘର ଖଣ୍ଡିଏ ହ'ନ୍ତା । ବାଉଣ୍ଡରିଗିରି କରିବା ପାଇଁ ଘର ଆଗକୁ ପଛକୁ କିଛି ଜାଗା ଥାଆନ୍ତା, ସବା ଶେଷରେ ମାଛ ଛାଡ଼ିବା ପାଇଁ ପୋଖରୀଟିଏ କରନ୍ତେ, ବଗିଚାରେ ଫୁଲଗଛଗୁଡ଼ିଏ ଲଗାନ୍ତେ । ତା' ସାଙ୍ଗକୁ କୁକୁଡ଼ାଗୁଡ଼ିଏ ମଧ୍ୟ ପୋଷନ୍ତେ । କିନ୍ତୁ ଦାସଙ୍କ ତ ଆଗେ ଯିବାକୁ ଚାନ୍ସ ମିଳିବନି । ସ୍ପୁଟ୍‌ନିକ ନାଁ ଧରିଲେ, ସେ ନାକ ଟେକିନ୍ତି ! ଏଇ ନାକଟେକା ଅଭ୍ୟାସ ଯୋଗୁଁ ସବୁତ ହନସ୍ତା ।

ସୁସ୍ମିତାଦେବୀ ପ୍ରକୃତିସ୍ଥ ହୋଇ ଦାସଙ୍କୁ ପଚାରିଲେ—ଆଚ୍ଛା କୋଉ ଗ୍ରହରେ ଅଧିକ ଶୀତ ? କୋଉ ଗ୍ରହକୁ ଗଲେ ମଣିଷର ଚମଡ଼ା ଏକାବେଳକେ ସଫେଦ ହୋଇଯାଏ ?

ଶ୍ୟାମାଙ୍ଗୀ ସୁସ୍ମିତା ଦେବୀଙ୍କ ଭାରି ଇଚ୍ଛା ଏକାବେଳକେ ଗୋରା ହୋଇଯିବା ପାଇଁ । ଦାସେ ସେ କଥା ବୁଝି ପାରିଲେ ବୋଲି କହିଲେ, ଭୟ କରିବାର କିଛି ନାହିଁ । ଆମେରିକା ଓ ରୁଷ ଉଭୟେ ଶୀତଦେଶ । ସେମାନେ ଯେତେବେଳେ ଆମର ବାହକ, ସେତେବେଳେ ନିଶ୍ଚିନ୍ତ ହୁଅ ଯେ ସେମାନେ ଶୀତ ଜାଗକୁହିଁ ବାଟ କଢ଼େଇ ନେବେ । ରୁଷର ସାଇବେରିଆର ଲୋକଙ୍କ ସାଥିରେ ଚାଲି ଗଲେ, ତୁମର ମନସ୍କାମନା ଅଚିରେ ପୂର୍ଣ୍ଣ ହୋଇଯିବ ।

ସେତେବେଳକୁ ଆର ଘରୁ ଚିନ୍ମୟୀର ପାଟି ଶୁଭିଲା—ଆଚ୍ଛା କୋଉଁ କୋଉ ଗ୍ରହକୁ ଗଲେ, କଳା କଳା ଲମ୍ବା ବାଳ ଅଧିକ ବଢ଼ି ପାରିବ ?

ଦାସେ କହିଲେ, ଅଫ୍ରିକାର ଠିକ୍ ଉପରକୁ ଯୋଉ ଗ୍ରହଟା ଥିବ, ସେଇଠିକି ଚାଲିଯିବ । କିନ୍ତୁ ଗୋଟିଏ ସର୍ତ୍ତ, ଯିଏ କଳା କଳା ଲମ୍ବା ଲମ୍ବା ବାଳ ବଢ଼େଇବାକୁ ଚାହୁଁଥିବ, ସେ ତା ଦେହର ବର୍ଣ୍ଣକୁ ମଧ୍ୟ କଳା ରଖିବାକୁ ଚାହିବା ଆବଶ୍ୟକ । ନଚେତ୍ ସେମାନଙ୍କୁ ସେ ଗ୍ରହକୁ ପଠାଯିବ ନାହିଁ ।

ସୁସ୍ମିତାଦେବୀ କହିଲେ, ହଇଲୋ ଚିନ୍ମୟୀ, ତୋର ଦେହର ବର୍ଣ୍ଣ ତ ଧଳା, ଖାଲି ବାଳ କମ, ଘୋଟ ଘୋଟ କହସ ବୋଲି ଏ ଭୁଲେଣି ? ସେଇଠିକି ଚାଲିଗଲେ ଗଲା । ଶାଶୁଘରକୁ ଗଲେ, କୁର୍ବାକ୍ଷିତ ଦିନ ବରଙ୍କ ସହିତ ପ୍ରଥମ ମିଳନରେ ପ୍ରଥମ କରି ଏଇ ପ୍ରସ୍ତାବଟି ଦେଇଦବୁ । ସେଇଦିନ ଯାହା କଥାବାର୍ତ୍ତା ହୁଏ, ସବୁ ମନେରହେ । ସେଦିନ ଆମର ଯାହା ଯାହା କଥାବାର୍ତ୍ତା ହେଇଥିଲା, ମୋର ପରା ମନରେ ଗାର କଟିଲା ପରି ରହି ଯାଇଛି ।

ସୁସ୍ମିତାଦେବୀଙ୍କ କ’ଣ ସେ କହିଥିଲେ, କ’ଣ ସେ ମନେ ରଖିଚନ୍ତି, ଦାସେ ବହୁତ ଭାବି ଭାବି ମଧ୍ୟ ମନେ ପକେଇ ପାରିଲେ ନା । ସେତବେଳକୁ ସାଢ଼ ଦୁଇ ବାଜି ଯାଇଥାଏ··· ସୁସ୍ମିତାଦେବୀ ଦାସଙ୍କୁ ଟାଣିନେଇ କହିଲେ, ବସ୍ । ସ୍ପୁଟ୍ନିକ୍‌ରେ ଯିବା ପରା··· ଦାସେ ଦେଖିଲେ, ଏ ସ୍ପୁଟ୍ନିକ୍‌ରେ ସିଟିଂ ଅରେଞ୍ଜମେଣ୍ଟ ନାହିଁ—ଖାଲି ସ୍ଲିପିଂ ବ୍ୟବସ୍ଥା । ସୁସ୍ମିତା ଦେବୀ ଏକାବେଳକେ ଟ୍ରେନ୍ଡ଼···ଦାସଙ୍କୁ ବୃଧୀୟ (ଭାରତରୁ ଭାରତୀୟ ଯିମିତ ବୃଧରୁ ସେମିତ ବୃଧୀୟ) ଭାଷାରେ କହିଲେ, ଏଠାକାର ଭାଷାରେ ବସ୍‌ର ଅର୍ଥ ଶୁଅ । ବୁଝିଲ ?

ଖର ନିଶ୍ୱାସର ପ୍ରବାହରେ ଦାସଙ୍କର ବୁଝିବା ପାଇଁ ତର ନ ଥିଲା ।

ଖାଲି ଗୋଟାଏ ଜିଦ୍‌ରେ ସୁସ୍ନାତାଦେବୀ ଆଜି ଦୀନବନ୍ଧୁ ଦାସଙ୍କ ସହଧର୍ମିଣୀ । ନଚେତ ସୁସ୍ନାତାଦେବୀ ହେଇଥାଆନ୍ତେ ଗ୍ରାମସେବିକା । ସେଇଥିପାଇଁ ସଡ଼କରେ ବି. ଡ଼ି. ଓ. ମାନଙ୍କ ମଟର ଦେଖିଲେ, ପାଖରେ ଗ୍ରାମସେବିକା କେହି ବସିଚନ୍ତି କି ନାହିଁ ଦେଖିବାପାଇଁ ଦାଣ୍ଡକୁ ବାଡ଼ିଅଡ଼କୁ ହୁଅନ୍ତି । ସଂବାଦପତ୍ରରେ କେତେକ ଗ୍ରାମସେବିକାଙ୍କ ଚରିତ୍ର ପଢ଼ି ଦାସଙ୍କୁ କହନ୍ତି, ହଇହେ ! ମୁଁ ତାହାହେଲେ କ'ଣ ଏଯା ହେଇ ଥାଆନ୍ତି ? ଏହି ପତ୍ରିକାର ସଂପାଦକଙ୍କ ସହିତ ତମର ତ ପରିଚୟ ଥିବ; ପଚାରି ଟିକିଏ ବୁଝନ୍ତ, ଏ ସବୁ ଘଟଣା ସତ ନା ମିଛ ?

ଦାସେ କୁହନ୍ତି, ସତ ହେଉ ବା ମିଛ ହେଉ, ତୁମେ ତ ନୁହଁ; ହେଇଥାଆନ୍ତର ଦୁର୍ନାମଟିକ ମୁଣ୍ଡରେ ମୁଣ୍ଡେଇବାପାଇଁ ଏତେ ବ୍ୟାକୁଳ କାହିଁକି ? କିଛି ସୁନାମ ଥାଆନ୍ତା ଯଦି ବୁଝାବୁଝି କରନ୍ତେ । ତୁମେ ବି ଗ୍ରାମସେବିକା ହୋଇଥାଆନ୍ତ କାହିଁକି ଯେ ।

ରନାଦେବୀ ଟିକିଏ ଚଢ଼ାଗଳାରେ କହନ୍ତି, ହୁଅନ୍ତି କାହିଁକି ମ···ବାପା ବାହା କରିବାପାଇଁ ମୋ ପାଇଁ କୁଆଁ କୁଆଁ ହେବାବେଳୁ ବର ଖୋଜିବାକୁ ଲାଗିଲେ । ଆମଆଡ଼େ ପିଲାକନ୍ୟା ବାହା ଚଳେ । ଶୈଶବରୁ କୈଶୋର, କୈଶୋରରୁ ଠିକ୍ ଯେଉଁଦିନ କରି ମୁଁ ଯୌବନରେ ପହଞ୍ଚିଲି, ସେତିକିବେଳୁ ବାପାଙ୍କ ମୁଣ୍ଡ ଘୂରେଇବାକୁ ଲାଗିଲା । ଯୁବତୀକନ୍ୟା ବାହା ଦେବାଟା ତାଙ୍କୁ ଯେମିତି ମନେହେଲା ଗୋଟାଏ ମହାକଠିନ ବ୍ୟାପାର··· ଇତିମଧ୍ୟରେ ପିଲାକନ୍ୟା ବିବାହ ପ୍ରସଙ୍ଗଗୁଡ଼ିକ ସେଇ ଦିନକ ଭିତରେ ଅପେ ଅପେ କଟିଗଲା । ବୟସ ବଢ଼ୁ ନ ବଢ଼ୁ

ମନେହେଲା—ମୋ ଯୌବନଟା ଅତି ଶୀଘ୍ର ବଢ଼ି ଚାଲିଛି । ଡିରଣ ଲଣ୍ଠିଆ ଘୁଡ଼ିଟା ଯିମିତି ଫୁଲି ଫୁଲି ଚାଲିଣ ହେଇ ଯାଇଛି । ହାତ ଗୋଡ଼, ପେଣ୍ଡା, ଜାନୁ, ଅଙ୍ଗ, ଚିବୁକ, ଓଠ ସବୁଥିରେ କିଏ ଯିମିତି ଏଇ ବଢ଼ିବାର ଗୋଟାଏ କାଉଁରୀକାଠି ବୁଲେଇ ଦେଇ ଚାଲିଗଲା । ଅଗଦୁଆରୀ ମଣ୍ଟୁଟା ମୋବାଇଗି ସକାଳୁଉଠି ଦାନ୍ତ ଘଷିବ ଯେ ତନି ଚାରିଘଣ୍ଟା କାଳ । ସେଇ ଦୁଆରମୁହଁଟାରେ ଇଥଡ଼ୁକୁ ସିଅଡ଼କୁ ହେଇ ହେଇ ଦେଉଚି ଚାରିଖଣ୍ଡର ଦାନ୍ତକାଠିଟା ଯେତେବେଳେ ତନିପଗକୁ ଚାଲି ଆସିବ, ବିଚରା ହାଇ ମାରି ମାରି ଘର ଭିତରକୁ ପଶିଯିବ; ଆଉ ଦେଖାହବନି । ମୋବାଇଗି ବିଚରା କେତେ ଯେ ଗାଳି ଖାଏ । ତେବେ ବି କ'ଣ ସିଏ ଚେତେ ? ଥରେ ଥରେ କୃଅମୃତିଳ ତମ ଲେଟାଟା ଥିଲା କହି ଘର ଭିତରକୁ ପଶିଆସେ । ଲେଟାଟା ଥୋଇ ଦେଇ ମା'କୁ କହେ, ମୂର୍ଚ୍ଛିନା ଅଛି ?

ମା ପଚାରେ, କାହିଁକି ?

—ସହରକୁ ଯିବ । ମୂର୍ଚ୍ଛିନା କହିଥିଲା, ଗଲେ ତାକୁ କହି କରି ଯିବାକୁ । କ'ଣ ତାର ଅଣିବାର ଥିଲା ।

ମା ମତେ ଡାକେ । ମୁଁ ମା ପାଖକୁ ଗଲାବେଳକୁ ମାଇଚିଆ ମଣ୍ଟୁଟା ଡରଥର କୁଆଡ଼େ ପଳାଏ । ଅତି ପାଖରେ ସାମନା ସାମନି ମୋ ସହିତ ଭେଟ ହେବାକୁ ସେ ଭାରି ଡରେ । ଯୁଆ ତା ଆଗରେ କହେ, କୁଆଡ଼େ ମୋ ରୂପର ଝାସ ସେ ସହିପାରେ ନା । ତା ଦେହ ଭିତରଟା ଜଳି ଗଲାଭଳି ଅନୁଭବ କରେ ସେ ।

ବାପା ଆସି ଘରେ ମା'କୁ କହନ୍ତି, କିଓ, ଛାଳି ନ ନେଇ କ'ଣ ମୁଁ ହାଡ଼ାଫେରି ଯାଇଥିଲି ? ତ ଜୁଟା ତ ହାତରେ ଧରି ଗଲି । କୃଅମୃତିଳ ରଖିଦେଇ, ଦାମ ସାଅନ୍ତରୀ ତାର ବଗିଚାଟି ଟିକିଏ ଦେଖିବ ଅସ କହିବାରୁ ବଗିଚାକୁ ଯାଇଥିଲି । ଅଧଘଣ୍ଟାକ ବା'ଦେ ଆସି ଦେଖିଲାବେଳକୁ ଛାଳି ନାହିଁ ! କିଏ ବୋଧେ ନେଇଗଲା ।

ମୁଁ ଓ ମା ଲୁଚିଲୁଚି ଭାରି ହସୁ । ଆମ ହସକୁ ଦେଖି ବାପା ମନେ ମନେ ଭାବନ୍ତି, ତାହାହେଲେ ସେ ଛାଳି ନେଇ ନ ଥିଲେ !

ମା କହେ, ତୁମର ଯାହା ମନ ନା ! ଛି, ଛି, ଛି । ବୁଢ଼ା ଅସି ହେଲଣି । ତାଳଟା ନେଇଥିଲ କ ନାହିଁ ମନେପଡ଼ୁନି ? ହଇ ହେ । ମଣ୍ଟୁ ଅଣି ଦେଇଗଲା ବୋଲି ସିନା—ନଇଲେ··· ।

ବାପା ମଣ୍ଟୁଟାକୁ ମନେ ମନେ ଭାରି ଭଲ ପିଲାଟି ତାହାହେଲେ, ବୋଲି ଧନ୍ୟବାଦ ଦଅନ୍ତି । ମା ଯାହା ବୁଝେ ତା'ର କିଛି ମାନେ ନ ଥାଏ । ସେ ଖାଲି ଭାବେ, ଘରର ଚାଳ ଘରକୁ ଆସିଲା ।

ମୁଁ କିନ୍ତୁ ମଣ୍ଟୁର ଗୃଲାକ ଓ ଭଳଣ୍ଣାକୁ ବୁଝେ । ତାହାବିକ କିଛି କହେନା । ଭାବେ, ଏଇ ବାପ ମା' ଗୁଡ଼ାକ ପୁରୁଣାକାଳିଆ । ତାଙ୍କର ପିଲାଣ୍ଡିଆ କାଳରେ ବାଟରେ ଯୁବତୀ ଝିଅଙ୍କୁ ଦେଖି, ଯୁବକମାନେ ବାଟ ଅଡ଼େଇ ଠିଆ ହେଉଥିଲେ । ଯୁବତୀ ଝିଅଙ୍କୁ ଆଖିଖୋଲି ଦେଖିବାଟା ଯିମିତି ମହାପାପ । ସେ ଯୁଗ ବଦଳି ଯାଇଛି । ଝିଅପୁଅ ଉଭୟେ ଉଭୟଙ୍କ ହାତଧରେ ଟାଣି ନେଇଯିବା ଯୁଗଟାର ନାଁ ହେଉଛି ବିଂଶ ଶତାବ୍ଦୀର ୧୯୭୨ ଯୁଗ । ଏଇ ଯୁଗରେ ଅସେମ୍ବ୍ଳି ପ୍ରଶ୍ନୋତ୍ତରରେ ହରଣଚାଲ, ପାପପ୍ରଣୟ ଓ ପ୍ରେମ ବ୍ୟାପାରରେ ଆତ୍ମହତ୍ୟା ଘଟଣାର ସଂଖ୍ୟା ବହୁତ ବୋଲି ଶୁଣିବାକୁ ମିଳେ । ମୁଁ ସବୁଦିନ ଖବରକାଗଜ ପଢ଼େ, ବାପା ଶୁଣନ୍ତି । ଏଇକଥା ପଢ଼ିଲା ମାତ୍ରେ କହନ୍ତି, ଝିଅ, ସେତକ ଛାଡ଼ିଦେଇ, ଅନ୍ୟ କ'ଣ ଅଛି ପଢ଼ ।

ଅପରପ୍ରାଇମେରୀରେ ପ୍ରଥମ ହୋଇ ପାସ୍ କରି ନ ଥିଲେ ବୋଧହୁଏ ମୋର ସେଇଠି ପାଠ ପଢ଼ାର ଇତିଶ୍ରୀ ହୋଇଥାଆନ୍ତା । ଆମ ସ୍କୁଲରେ ମୁଁ ଥିଲି ଏକମାତ୍ର ଝିଅ । ପ୍ରଥମ ହୋଇ ପାସ୍ କରିବି ବୋଲି ମନ ଦେଇ ପାଠ ପଢ଼ୁ ନ ଥିଲି । କିମିତି କେଜାଣି, ଯାହା ପଢ଼େ ମନେ ରହିଯାଏ ବୋଲି ପ୍ରଥମ ହୋଇ ଉତ୍ତୀର ଗଲି । ମାଷ୍ଟ୍ରମାନେ ବାପାଙ୍କ ପାଖରେ ଅଳି କଲେ; ମୁଁଙ୍କୁ ନାକୁ ବୃତ୍ତିପରୀକ୍ଷାକୁ ପଠେଇବା । ବାପା ନାହିଁ ନାହିଁ କରି କରି ଶେଷରେ ହଁ କଲେ । ବୃତ୍ତିପରୀକ୍ଷାରେ ବସିଲି, ଫଳ ବାହାରିଲା, ସିଥିରେ ପୁଣି ସେଇ ପ୍ରଥମ । ମାସକୁ ଦଶ ଟଙ୍କା

କର ବୃତ୍ତି । ବାପାଙ୍କ ଭୁଲେଇଣି ପଢ଼ିଲା ··ପୁଣି ତାହାହେଲେ କ'ଣ ପଢ଼େଇବାକୁ ପଢ଼ିବ ? ବାପା ଥରେ ଥରେ ମାଷ୍ଟ୍ରମାନଙ୍କୁ କହନ୍ତି, ମୂର୍ଚ୍ଛନା ସ୍ଥାନରେ ଅନ୍ତ କିଏ ପନ୍ଦର ଟଙ୍କା ବୃତ୍ତି ନେଇ ପଢ଼ିଲେ ତ ଚଳନ୍ତା । ବାପା ଅଛାରେ କହୁଚନ୍ତି କି କଥା ଉପରେ ଗୁରୁତ୍ୱ ଦେଇ କହୁଚନ୍ତି, ମାଷ୍ଟ୍ରମାନେ ବୁଝିପାରନ୍ତି ନା । ସେମାନେ ବୁଝେଇ ବସନ୍ତି । ଶେଷରେ ବାପା ବିରକ୍ତ ହୋଇ ମତେ କହନ୍ତି, ତୋ ମା'କୁ ଡାକିଦେଲୁ; ସେଇ ଆସି ବୁଝୁ । ଇଆଡ଼େ କୁହାହଉଚି, ଝିଅଟା ବଢ଼ିଗଲାଣି ବର ଖୋଜ, ସିଆଡ଼େ ପୁଣି ପାଠପଢ଼ା । ପାଠଗୁଡ଼ାକ ଶେଷ ହେବନି କି ଝିଅଟା ବାହା ହେଇ ପାରିବନି ଦେଖୁଚି !

ଶେଷରେ ମା କଥାହିଁ ରହିଲା । ଷଷ୍ଠଶ୍ରେଣୀରେ ଭର୍ତ୍ତି ହେଲି । ମାଇନର ପାଠ ପରେ ସେଇ କ୍ଲାସ ପ୍ରଥମ ହେବାଟା ଆସି ମୋର ଭାଗ୍ୟରେ ଜୁଟିଲା । ଲୋକଙ୍କ ମୁହଁରେ ମୋର ଭୂୟସୀ ପ୍ରଶଂସା କିନ୍ତୁ ବାପାଙ୍କ ମୁହଁରୁ ଯେଉଁ ଭାଷା ବାହାରିଲା, ସେ ଗୁଡ଼ାକ ନିହାତି ରାଗ ରାଗ ।

ପଧାରେ ବନ୍ଧାହେଇ ରହିଥିବା କେତେ ଯେ ବର ସେତେ-ବେଳକୁ ଫିଟି ଚାଲି ଗଲେଣି, ବାପା ସେ ସବୁ ହିସାବ ରଖିବାରେ ବ୍ୟସ୍ତ ରହିଲେ । ମା ଖାଲି ହିସାବ ରଖିଲା, ଝିଅ ଯଦି ମାଟ୍ରିକ ପଢ଼େ, ଆଇ.ଏ. କି ବି.ଏ. ବର ଦରକାର । ଆଇ.ଏ. ପାସ୍ କଲେ ଏମ୍. ଏ. ବର ଆବଶ୍ୟକ ! ବି. ଏ. ହେଲେ ଦୁଇଶହ ତିନିଶହ ଦରମା ଥିଆ । ଏମ୍. ଏ. ହେଲେ ଅନ୍ତତଃ ପାଞ୍ଚଶରୁ କମ୍ ନୁହେଁ । ଝିଅ ସୁଖରେ ରହିବ ।

ମଣ୍ଟୁ ଦେଖା ମୋ ଯୌବନଟା ଆସିଜୁଟିଲା ବୋଧହୁଏ ନବମ ଶ୍ରେଣୀରେ । ମଣ୍ଟୁ ସେଇ ବର୍ଷ କର ବୋଧହୁଏ ମତେ ଦେଖି ଦେଖି ଫେଲ ହେଇଗଲା । ତା ବାପା କହିଲେ, ପାଠପଢ଼ାରେ ସିନା ଫେଲ ହେଲୁ, ଗୃହକାମରେ ଭଲ ମାର୍କ ରଖିବୁ, ସେଇ-ଥିରେ ଲାଭ । ମଣ୍ଟୁ ତା ବାପାଙ୍କୁ କହେ, ମାଷ୍ଟ୍ରଙ୍କୁ କିଛି ପଇସା ଦେଲେ, ସେ ଦଶମ ଶ୍ରେଣୀକୁ ମତେ ଠେଲି ନେଇ ଯାଆନ୍ତେ···

ଦଶମ ଶ୍ରେଣୀରେ ପଢ଼ିବାକୁ ମେର ଭାରି ଇଚ୍ଛା । ମଣ୍ଟୁର ବାପ ।
ଓଡ଼ିଆ, ମା ଗୁଜୁରାଟୀ । ଗୁଜରାଟୀ ମା କହନ୍ତି—ନାଇଁରେ ପୁଅ,
ବ୍ୟବସାୟରେ ଯେମିତି ମୁଠାପଇସା ମିଳିବ, ପାଠପଢ଼ାରେ
ମିଳିବନି । ଚାଲ୍‌କାମ ନକଲେ ନାହିଁ, ଦାଣ୍ଡ ଦୁଆରେ ଦୋକାନ-
ଟିଏ ଦେଇ ବସ । ବାପା ପଇସା ନଦିଅନ୍ତୁ, ମୁଁ ଦେବି । ଏ ପ୍ରସ୍ତାବଟା
ମଣ୍ଟୁ ମନକୁ ଭାରି ପାଇଗଲା । ଦାଣ୍ଡଦୁଆରେ ବସିବା ଯାହା,
ଦଶମଶ୍ରେଣୀରେ ବସିବା ତାହା । ସ୍କୁଲ ଛୁଟି ହେଲେ, ଅନ୍ତତଃ
ଏଇ ଦାଣ୍ଡ ଦେଇ ତ ମୂର୍ଚ୍ଛନା ଯିବ…ଟିକିଏ ଦର୍ଶନ ମିଳିଲେ
ହେଲା ।

ଶେଷରେ ସେୟା ହେଲା ।

ମଣ୍ଟୁ ଦୋକାନ ଦେଲା । ଆଉ ତାକୁ ଦିନ ନଅ
ଯାଏ ଦାନ୍ତକାଠି ଧରି ଘଷିବାକୁ ପଡ଼ିଲାନି କି ଆମ
ଘରେ ତାଲ ଦଉଡ଼ ଦେବାକୁ ପଡ଼ିଲାନି । ପନ୍ଦର ଦିନ ଭିତରେ
ଦୋକାନର ସମସ୍ତ ସରଞ୍ଜାମ ଆସି ଥୁଆହେଲା । ଗୁଡ଼ିଲ, ଡାଲି,
ଲଙ୍କା, ଲୁଣ ପାଇଁ କାଠର ଉପରଖୋଲା ବଡ଼ ବଡ଼ ଡବା ।
ଅନ୍ୟାନ୍ୟ ଜିନିଷ ପାଇଁ ସେଲ୍‌ଫ୍, ଆଲମିରା ଆସି ସଜା ହେଲା ।

ଦୋକାନ ପ୍ରତିଷ୍ଠା ଦିନ ମଣ୍ଟୁ ବଡ଼ଭୋରରୁ ଆସି ଆମ ଦାଣ୍ଡ-
କବାଟ ଶିକୁଳି ଧରି ଖଡ଼ ଖଡ଼୍ କରିଥିଲା । କିଏ ଡାକୁଛି ଜାଣିବା
ପାଇଁ ମୁଁ ନିଜେ ଯାଇ ଦୁଆର ଖୋଲିଦେଇଥିଲି । ହଠାତ୍ ମତେ
ଦେଖି ଥା ଥା ମା ମା ହୋଇ କହିଥିଲା, ବାପା ଅଛନ୍ତି ? ମୁଁ ନାଇଁ
କରିଥିଲି । କହିଥିଲି, ଟୁର୍‌କୁ ଯାଇଛନ୍ତି । କାଆଲି ଆସିବେ । ହଉ
ତେବେ ଯ ଉଚିତ କହି ମଣ୍ଟୁ ପଳଉ ପଳଉ ପୁଣି ବାହୁଡ଼ି ଆସି
କହିଥିଲା, ଆଉ ତମ ମା ଅଛନ୍ତି ?

—ଡାକିଦେବି ?

—ନ ଡାକିଲେ ବି ଚଳିବ । ମୁଁ କ'ଣ କହୁଥିଲି କି,
ମୋ ମା କହୁଛି, ଆଜି ତମ ଘରର ସମସ୍ତେ ଆମ ଘରକୁ ଯିବ ।
ଚୁଲ୍ଲୀ ଲଗେଇବ ନାହିଁ, ଆମ ଘରେ ଖାଇବ ।

ପଚାରିଥିଲି, କାହିଁକି ? ତୋର କ'ଣ ବାହାଘର ?

ତୁଇଁ ତ କ'ଣ କହୁଚବା ? ମୋ'ର କ'ଣ ବାହାବଅସ ହେଲଣି ? ବାପାଙ୍କ କୂଳରେ କୁଅଡ଼େ ପୁଅମାନେ ଚାଳିଶ ବର୍ଷରେ ବାହା ହନ୍ତି, ଅଉ ମା'ଙ୍କ ଜାଡରେ ତାଠୁ ବେଶି ବଅସରେ ।

—ହଇରେ ! ତୁ ତ ଏତକ୍କିବେକୁ ବୁଢ଼ା ଦେଖାଗଲୁଣି, ଗାଲ୍‌ଫାଲ୍ ପଶିଗଲାଣି, ଅଉର କୋଡ଼ିଏ କି ବାଇଶ ବର୍ଷପରେ ବାହାହବୁ ? ଝିଅ ମିଳିବେଟି କି ?

ମଣ୍ଟୁ କ'ଣ କହିବ ବୋଲି ହଜିଥିଲା, କିନ୍ତୁ ପାରିଲାନି— କହିଲା, ହଉ ଯାଉଚି, ତମେ କିନ୍ତୁ ଯିବ । ଅମ ଦୋକାନ ପ୍ରତିଷ୍ଠା !

କହିଲି, ମୁଁ ତ ନିଶ୍ଚୟ ଯିବ, ଅଉ କିଏ ଯିବେ କି ନା କହି ପାରିବିନି ।

ଯିବିନି ବୋଲି ଭାବୁଥିଲି, କିନ୍ତୁ ମଣ୍ଟୁଟା କ'ଣ ଭାବିବ, ନ ଗଲେ, ତା' ଭୋଜିଟା ମାଟି ହେଇଯିବ ବୋଲି ଗଲି । ମଣ୍ଟୁ ମାଆଲେ ମୁଁ ପରଷିବି କହି, ଯାହା ଯେତେ ଜିନିଷ ଥିଲା, ମୋର ପାଖରେ ଅଣି କୁଢ଼େଇଲା । ଅରୁଆ ଭାତରେ ଘିଅ ଦେଇ ଦେଇ, ଗୋଟିକଯାକ ଘିଅଗିନା ମୋର ଭାତରେ ଅଣି ଢାଳି ଦେଇଥିଲା । ଏତେ ଘିଅରେ ଭାତକୁ ଗୋଳେଇ ଖାଇହବନି କହି ମୁଁ ଭାତତକକୁ ଅଡେଇ ଦେବାରୁ ମଣ୍ଟୁ ମନରେ ବଡ଼ ଦୁଃଖ ହେଇଥିଲା । ଆହୁର ଭାତ ଆଣି ପରଷିଥିଲା । ସେ ମନେ ମନେ ଭାବିଥିଲା, ଯାହାକୁ ସ୍ନେହ ସ୍ନେହ ଏ ଦୋକାନ ଦଆ, ତାକୁ ଯଦି ସନ୍ତୁଷ୍ଟ ନ କରିଯାଏ, ବ୍ୟବସାୟ ଚାଲିବନି । ଭୁଷୁଡ଼ି ଯିବ ।

ବିଚରା ମଣ୍ଟୁ...ବହୁତ କାନ୍ଦିଥିଲା ସେଦିନ—ଯଉଦିନ ବାପା ବଦଳି ହୋଇ ଟ୍ରକରେ ଜିନିଷପତ୍ର ବୋଝେଇ କରି ଅମକୁ ସାଙ୍ଗରେ ଧରି ତା'ର ଅଖି ଅଗରେ ଅନ୍ୟ ଜାଗାକୁ ଚାଲିଗଲେ ।

ଥରେ ସେ କୁଆଡ଼େ ଦିନଟା ବଖାରୁ, ଶହେ ଦୁଇଶ ପାମ୍ପଡ଼ ଧରି ଅମର ନୂଆ ଜାଗାକୁ ଅସିଥିଲା । ମତେ ବି ବହୁତ ଖୋଜିଥିଲା । ମୁଁ ସେତେବେଳକୁ ଘରେ ନ ଥିଲି, ମାମୁଁଘରକୁ ଚାଲି ଯାଇଥିଲି ।

ବାପାଙ୍କ ବଦଳି ହେବା ଜାଗାରେ ସ୍କୁଲ୍ ସୁବିଧା ହେଲାନି ବୋଲି ମାଇଁ ଅସି ମତେ ନେଇଗଲେ ତାଙ୍କ ସହରକୁ । ମାଇଁଙ୍କର ପିଲାପିଲି ନ ଥିବାରୁ ବଡ଼ ଏକା ଏକା ବୋଧ କରୁଥିଲେ । ପାଖକୁ ଖାଲି ତନି ଗୃହେଟି ବିଲେଇ ଛୁଆ । ବିରାଡ଼ିଗୁଡ଼ିକର ନାଁ ଗୁଡ଼ିକ ଠିକ୍ ବଙ୍ଗାଳୀ ଘରର ଝିଅଙ୍କ ନାଁ ଭଳି ସୁନ୍ଦର । ତାକ ନାଁ ଗୁଡ଼ିକ ମଧ୍ୟ ଭାରି ଭେହ୍ଲା ଟେଗହ୍ଲା; ଯଥା—ଭୂଅବିରାଡ଼ି ନାଁ ଝୁନୁ, ମାଇ ବିରାଡ଼ି ନାଁ ଟୁନୁ, ଅନ୍ୟ ଦୁଇଟିର ନାଁ ମିସ୍ ଓ ସିଷ୍ଟାର । ମିସ୍‌ର ଦେହଟି ତୁଳା ଶେଯ ଭଳି ଭାରି ନରମ । ଏଡ଼ିକି ବଡ଼ ଲାଞ୍ଜ, ଖୁବ୍ ମୋଟା । ମିସ୍ ବିଷୟ କହି ବସିଲେ, ମାଇଁଙ୍କର ରାତି ପାହି ଯାଏ । ନିଜ ଜନମ କଲା ପିଲାଠୁ ବଳି ତା ଉପରେ ଶରଧା । ସେତେବେଳେ ସେମାନେ କୁଆଡ଼େ ନୂଆ ହୋଇ ସହରକୁ ଅସି କୁମ୍ଭାରସାହି ପାଖରେ ଘରଭଡ଼ା ନେଇ ରହୁଥାଆନ୍ତି ।

ମାଇଁ କହନ୍ତି, ଯା ମା ଯୋଉଦିନ ଯାକୁ ଜନମ କଲା, ତାର ଗୃହଦିନ ବାଦେ ମଟର ଗୃପାରେ ମରିଗଲା । ଏ ସେତେବେଳକୁ (ହାତରେ ଦେଖେଇ କହନ୍ତି) ଏଡ଼ିକିଟିଏ । ମେଣ୍ଢାଏ ତୂଳାରେ ଦୁଧ ଟିକିଏ ବୁଡେଇ ମାଇଁ ଅମର ଛୁଆର ମୁହଁ ଆଗରେ ଥୋଇଦେଇ ଡ଼ିବିଟି ଜାଳି ରାତିସାରା ବସିଥାଆନ୍ତି । ମିସ୍ ସେତକ ଟିକିଏ ଟିକିଏ କରି ଚୁଚୁମି ଖାଏ । ଅସ୍ତେ ଅସ୍ତେ ବଡ଼ ହେଲା, ମାଇଁଙ୍କର ପାଖ ଛାଡ଼ିଲାନି । ଗାଡ଼ିରେ, ମଟରରେ ଯୁଆଡ଼େ ଯାଅନ୍ତି, ମିସ୍ ସିଆଡ଼େ ଯାଏ । ମାମୁଁ ପ୍ରଥମେ ପ୍ରଥମେ ଭାରି ବିରକ୍ତ ହେଉଥିଲେ । କିନ୍ତୁ ତାଙ୍କର ବି ଲମିତ ଶରଧା ବଢ଼ିଗଲା ଯେ ମାଂସ ଖାଇଲେ ଅଧେ ପାଟିରେ ଧରି ଡାକନ୍ତି, ମିସ୍ । ମିସ୍ ଅଣ୍ଟୁ ଉପରେ ଚଢ଼ି ପାଟିରୁ ଅଧେ ଛଡ଼େଇ ଅଣେ, ମାମୁଁ ଅଧେ ଖାଆନ୍ତି । ବହୁତ କଷ୍ଟରେ ମାମୁଁ ସେ ଅଭ୍ୟାସ ଛାଡ଼ିଲେ । ଅଜ ଏ ଝୁନିଅଁଟା ବଡ଼ ଦୁଷ୍ଟ । ସବୁ-

ବେଳେ ଢୋଢ଼ପଣା । ଢୋଢ଼ରେ ପଶିଥିବ, ମାଂସ ଦଅ, ମାଛ ଦଅ, ଯେତେ ଡାକ, ଯିବନି ସେ । ମାଇଁ କହନ୍ତି, ଥରେ କୁଆଡ଼େ ତାହା ସାଙ୍ଗରେ କଳିକଜିଆ ଲାଗି ଗଡ଼ିଆ ଛଡ଼ିଆ ହୋଇ ଆସିଲା କେଜାଣି, ଘରେ ପଶୁ ପଶୁ ଗନ୍ଧ ଯେ ଗନ୍ଧ ! ସ୍ୱତଯାକଲାଗି ଦେହରେ ସାବୁନ ମାଖି ଧୋଇଲା, ନିଆଁ ଲଗାଇ ସେକିଲା, ତା'ପରେ ଯାଇ ଘରେ ପୂରେଇଲା । ଝୁନୁ କିଛି ଜାଣେନା, ଖାଲି ତିନିମାସରେ ତିନି ଗୁରଣ୍ଠା କଅଁଳେଇବା ତା କାମ । ଯୋ ସୁନ୍ଦର ଛୁଆଗୁଡ଼ିକ ହେ ! ଯିଏ ଦେଖିଲା, କହନ୍ତି ଦେଇ, ମୋ ପାଇଁ ଗୋଟିଏ । କଲେକ୍ଟର ଘରର ସେ ଯେଉଁ ବଡ଼ ବାସ୍ଡ଼ଠା, କା'ର ଛୁଆ ଜାଣ ? ଯ୍ୱାର । ତାକୁ ହୋଇଥିଲା, ଦ'କ ତିନିମାସ । ଗୁଡ଼ୁରୁ ଗୁଡ଼ୁରୁ ହୋଇ ଦାଣ୍ଡଦୁଆରେ ଖେଳୁଥିଲେ । କଲେକ୍ଟରଆଣୀ ଘରକୁ ଆସିଥିଲେ । ଗଲାବେଳେ ତାକୁ ବ୍ୟାଗରେ ପୂରେଇ କହିଲେ, ଉପମା, ତମ ଘରୁ ଗୋଟିଏ ଜିନିଷ ଚୋରେଇ ନେଲି, ଗାଳି ଦବନି । ଇମିତି କିଏ କେତେବେଳେ ଆସି ନେଇଯାଆନ୍ତି । ସିଷ୍ଟର କଅଁଳାଏ ଯେ, ଝୁନୁ ଭଳି ନୁହେଁ । ସେଇଠା ଡାହାଣୀଟେ । ଯ୍ୱାଡ଼େ ସିଆଡେ ବୁଲି ବୁଲି ଯ୍ୱା ତା ସାଙ୍ଗେ ମିଶେ । ଭଲ ଛୁଆ ହେବେ କୁଆଡ଼ୁ ?

ମାମୁଁ ଦାଣ୍ଡଦୁଆରେ ବସି ଓକିଲାତି ବହିରେ ନିର୍ଲିପ୍ତ ରହନ୍ତି । ମାଇଁ ଇଆଡେ଼ ଝୁନୁ ଝୁନୁକୁ ଚୁମାଦେବା, ଅଉଁଷା ଅଉଁଷି କରିବାରେ ବ୍ୟସ୍ତ ରହନ୍ତି । ପୂଜାରୀ ସେପେଇ କରି ସାରି ଚିଲମ ଠାଣି ଦେଇ ଟେଳାଏ । ମୁଁ ଆଜି ପଢ଼ଶାଘରର ସିପ୍ରା ମହି ଘରେ ବସି ପଢ଼େ ! ପନ୍ଦର ବଖରା ଘରରୁ ଚାରି ବଖରା ଘରେ ଆମେ ଚଳପ୍ରଚଳ ହେଉ । ଦାଣ୍ଡଅଡ଼ର ତିନି ବଖରା ଘର ଭଡ଼ା ଦିଆଯାଇଥାଏ, ଏକ ବ୍ୟବସାୟ ପ୍ରତିଷ୍ଠାନକୁ । ସାଇନ-ବୋର୍ଡରେ କି ଗୋଟାଏ ଏଜେନ୍‌ସି ନାଁ ଲେଖାଥାଏ ମନେ ପଡ଼ୁନି । ତିନିଜଣ ପାର୍ଟନର । ଗୋରାତୋରା ସୁସ୍ଥ ସବଳ ସୁଶିକ୍ଷିତ ବଡ଼ ଘରର ତିନିଜଣ ଯୁବକ । ଦେଖିଲେ ମନେହୁଏ ତିନି ଭାଇ ! ଲଣ୍ଡନ ଫେରନ୍ତା ଜଣଙ୍କ ନାଁ ରୁଦ୍ରଚରଣ··· । ନାକ

ତଳେ ହୁଟେଲଙ୍ଗି ଜଣ । ଲମ୍ବା ଚେହେରା । ମୁହଁରେ ସବୁବେଳେ ଚୁରୁଟ୍ । ଇଂଲିଶ ଉଚ୍ଚାରଣ ଠିକ୍ ଇଂରେଜଙ୍କ ଭଳି । କହିଲା-ବେଳେ ମନେ ହୁଏ ଯିମିତି କବିତାଗୁଡ଼ିଏ ବୋଲି ଯାଉଚନ୍ତି । ତାଙ୍କର ପଦେ କଥାରେ ବହୁତ କଥା ବୁଝାଏ । ସିପ୍ରା ସ୍ୟାଙ୍କର ପ୍ରଶଂସା କରି କରି ଥରେ ଥରେ ଅଭିଭୂତ ହୋଇପଡ଼େ । କହେ, ବାପାଙ୍କୁ କହି ସ୍ୟାର୍ଙ୍କର ପାଖରେ ଟିଉସନ କରିବି । ଇଂରେଜୀରେ ବହୁତ ମାର୍କ ରହିବ । ତୁ ତୋ ମାମୁଁଙ୍କୁ କହି, ମାସକୁ ପଚାଶ ଟଙ୍କା ଦେଲେ, ମୁଁ ବି ପଚାଶ ଟଙ୍କା ଦିଅନ୍ତି—ଶହେ ଟଙ୍କା ନ ଦେଲେ ଅସୁନ୍ଦର ହେବ ? ବିନା ପଇସାରେ ତାଙ୍କୁ ପଢ଼ାଅ ବୋଲି କହିଲେ ରାଜି ହେବେ କି ନାହିଁ କେଜାଣି !

ମୁଁ କିଛି ନ କହି ନୀରବ ରହିଥିଲି—ସେ ଭାବିଲା ମୁଁ ହିଁ କଲି ବୋଲି ।

ତାଙ୍କୁ ପଚାରିଲା କି ନାହିଁ କେଜାଣି, ସିପ୍ରା ତା ଅରବିନ ଭାଇବାବୁ ଦେଇଥିବା ଗୋଟାଏ ଲମ୍ବାଖଣ୍ଡି ଅଣି ମତେ ଦେଖେଇଲା । ସିଥିରେ ସେ ବହୁତ କଥା ବର୍ଣ୍ଣନା କରିଥିଲେ । ଲଣ୍ଡନରେ ଥିବାବେଳେ କୁଆଡ଼େ ତାଙ୍କ ହାଉସର୍ୱାଇଫ୍ରି ଝିଅ ତାଙ୍କୁ ଭଲ ପାଇଥିଲା । ସେ ଘରେ ନ ଥିବା ବେଳେ ସେ ଲାକେ ସେଭେଇ କରି ଦେଇ ଅଣି ଟେବୁଲ ଉପରେ ଥୋଇ ଦେଇଯାଏ । ବାସନ ତଳେ ସେ ସବୁବେଳେ ଖଣ୍ଡିଏ ଚିଠି ଦେଖନ୍ତି । ତଳେ ଲେଖା ହୋଇଥାଏ

I get immense pleasure to serve you dices.

ତୁମର ଲୁସି

ମୁଁ ମୋ ଅଧାପୋଡ଼ା ସିଗାରେଟଗୁଡ଼ିକୁ ଅଷ୍ଟ୍ରେ ଅଭାବରୁ ଗୋଟିଏ କାଗଜରେ ରଖି ଦେଇଥାଏ । ସବୁବେଳେ ଦେଖେ ଅଧାପୋଡ଼ା ସିଗାରେଟଗୁଡ଼ିକ ମଧ୍ୟ ନାହିଁ । ଲୁସି ଯେତେବେଳେ ସିଗାରେଟ ନିଏ, ସେତେବେଳେ ଲେଖି ଦେଇଯାଏ, I like to smoke your halfburnt cigaratees । ଲୁସିକୁ କିନ୍ତୁ ମୁଁ ଦେଖି ପାରେ ନାଁ । ହାଉସର୍ୱାଇଫଙ୍କୁ ଡାକିବାକୁ ହେଲେ, କଲିଂବେଲ୍ ସାହାଯ୍ୟରେ ଡାକିବାକୁ ପଡ଼େ । ତାଙ୍କ ଘରକୁ

ଯାଇ ହୁଏ ନା । କାରଣ ତାଙ୍କ ଘରକୁ ଯିବାକୁ ହେଲେ, ନାନା ଅଙ୍କୁଆ ବଙ୍କୁଆ ବାଟ ଦେଇ ଯିବାକୁ ହୁଏ । ବାଟଘର ମାନଙ୍କରେ ଅନ୍ୟ ଭଡ଼ାଟିଆମାନେ ଥାଆନ୍ତି । ସେମାନେ ହୁଏତ ଆପତ୍ତି କରି ପାରନ୍ତି, ଏଇ ଭୟରେ ଯାଇ ହୁଏ ନା । ତା ଛଡ଼ା ଏଇ ଲୁସି ଯିଏ, ସଠିକ୍ ଭାବରେ ଜାଣିବା ମୋ ପକ୍ଷରେ ସମ୍ଭବ ନୁହେଁ ।

ଅଠଦିନ ବାଦେ ଲୁସି ଯେଉଁ ଚିଠି ଲେଖିଲା, ସେଥିରେ ଥିଲା, ମୁଁ ମଧ୍ୟ ଆପଣଙ୍କ ବିଶ୍ୱବିଦ୍ୟାଳୟରେ ପଢ଼େ । ଏତେ ବଡ଼ ବିଶ୍ୱବିଦ୍ୟାଳୟ । ଓଡ଼ିଶାର ଗୋଟାଏ ବଡ଼ ସହରର ଜନସଂଖ୍ୟା ଭଳି ଏହାର ଛାତ୍ରଛାତ୍ରୀ ସଂଖ୍ୟା । ତା ଭିତରେ ଲୁସି ନାମଧେୟାଙ୍କ ସଂଖ୍ୟା ଶହେ କି ଦୁଇଶହ ହୋଇଥିବ । କିମିତି ଖୋଜିବି, ତାହାକୁ ପରୀକ୍ଷିବ ହେଇହେଇ ମୋ ମୁଣ୍ଡ ଘୂରିଗଲା । ଏହି ମସ୍ତିଷ୍କ ଘୂର୍ଣ୍ଣନ ପ୍ରକ୍ରିୟାର ଅବସାନ ହେଲାନି ବହୁଦିନ ଧରି । ଏଥିଲାଗି ମତେ ଡାକ୍ତରଖାନା ଯିବାକୁ ପଡ଼ିଥିଲା । ଭାବିଥିଲି, ଭାରତରେ ଯିନା ନାହିଁ, ପ୍ରଗତଶୀଳ ଅତିବିଜ୍ଞାନୀ ଲଣ୍ଡନ ସହରରେ ଅନ୍ତତଃ ପ୍ରଣୟପ୍ରାର୍ଥୀନୀ ଅଦେଖା ନାରୀମୂର୍ତ୍ତିଟିକୁ ଭୁଲିଯିବା ପାଇଁ କିଛି ଔଷଧ ଥିବ; କିନ୍ତୁ ନ ଥିଲା । ଯେଉଁ ଡାକ୍ତରଙ୍କୁ ଯାଇ ଏ ଔଷଧ ମାଗିଥିଲି, ସେ ମତେ ପାଗଳଭାବି, ପାଗଳାମି ଉପଶମକାରୀ ଜଣେ ଡାକ୍ତରଙ୍କ ପାଖକୁ ପଠେଇ ଦେଇଥିଲେ । ଏ ଜଣକ ପୂରା-ପୂରି ଡାକ୍ତର ହେଇ ନ ଥିଲେ ମଧ୍ୟ ହଜସ୍ ସର୍ଜନଙ୍କ ଭଳି କାମ କରୁଥିଲେ । ସେ ଜଣେ ଲେଡ଼ି ଡାକ୍ତର ବୋଲି ଜାଣିଥିଲେ ମୁଁ ଆଦୌ ଯାଇ ନ ଥାନ୍ତି । ଡାକ୍ତର ମହାଶୟ ହେଇ ସେଇ ଘରକୁ ଯାଅ ବୋଲି କହି ହାତଠାରି ଘରଟା ଦେଖେଇ ଦେଇଥିଲେ । ମୁଁ ସିଧା ସେଠିକି ଯାଇଥିଲି । ସାଇନ୍ ବୋର୍ଡ଼କୁ ଦେଖିଲି, ଲେଖା ହେଇଚି ଡକ୍‌ଟର ଲୁସି । ମୁଁ ଚମକି ଉଠିଥିଲି । ପରେ ପରେ ଭାବିଥିଲି, ନା ଇଏ ସେଇ ଲୁସି ହେଇ ନ ଥିବେ । ଡାକ୍ତରୀପଢ଼ି ଅଧାପୋଡ଼ା ସିଗାରେଟ୍‌କୁ ଫୁଙ୍କିବା ପାଇଁ କିଏ କେବେ ଚିନ୍ତା ସୁଦ୍ଧା କରିପାରେ ? ଇଏ ନିଶ୍ଚୟ ସିଏ ନୁହଁ ଭାବି ମନକୁ ଠାଣି

କର ପରଦା ଅଢ଼େଇ ଭିତରେ ପଶୁ ପଶୁ ଦେଖିଲି, ଜଣେ ଏକୋଇଶ ବାଇଶ ବର୍ଷର ଯୁବତୀ । ଗୃହପଟେ ଗୁଡ଼ାଏ ପାଗଳ ପାଗଳୀ । ମତେ ଦେଖି କହି ଉଠିଲେ, ଓଃ ୟୁ ? ପରେ ପରେ ଯାହା କହିଲେ, ତା'ର ଅର୍ଥ ହେଉଛି, "ବାହାରେ ଟିକିଏ ଅପେକ୍ଷା କରି ନୁହେଁ, ଅପେକ୍ଷା କରନ୍ତୁ; ମୁଁ ଏ ରୋଗୀମାନଙ୍କ କାମ ସାରିଦିଏ ।"

ସେ ଯେମିତି ସ୍ୱର, ଭଙ୍ଗିରେ ଓ ନମ୍ରତା ସହକାରେ କହିଲେ; ମନେ ହେଲା, ମତେ ସେ ଆଗରୁ ଚିହ୍ନିଚନ୍ତି । ଭାରି ଖାତିର କରନ୍ତି । ବାହାରେ ଘଣ୍ଟାଏ କାଳ ଅପେକ୍ଷା କରିବା ଭିତରେ ମୋ ମନରେ ସନ୍ଦେହର ବୋଝ କ୍ରମଶଃ ବଢ଼ି ଚାଲିଲା । ମନେ ମନେ ଭାବିଲି, ଇଏ ସେହି ଲୁସି ନୁହଁନ୍ତି ତ ? ଅଧାପୋଡ଼ା ସିଗାରେଟ୍ ଖାଇବା ଏବଂ ଜଣେ ସମ୍ପର୍କହୀନ ଲୋକପାଇଁ ଯାଚି ହୋଇ ଖାଦ୍ୟପେୟ ନିଜ ଖର୍ଚ୍ଚରୁ ଆଣି ଟେବୁଲ ଉପରେ ଥୋଇ ଯିବାଟା ଭାରତରେ ଅପ୍ରାସଙ୍ଗିକ ହୋଇପାରେ; ଏଇ ସୁସଭ୍ୟ ଗ୍ରେଟ୍‌ବ୍ରିଟେନରେ ହୁଏ ତ ହୋଇ ନ ପାରେ, ଏ କଥା ମନେ ମନେ ଭାବିଲି ।

ଠିକ୍ ଏତିକବେଳକୁ ଡାକ୍ତର ଲୁସି ମତେ ଡକେଇ ପଠେଇଲେ । ସେତେବେଳେ ତାଙ୍କ କାମରାରେ କେହି ନଥିଲେ, ସେ ଏକା । ଡାକ୍ତରମାନେ ଯେପରି ଲକ୍ଷଣ ସବୁ ମୂଳରୁ ଶେଷ-ଯାଏ ପଚାରି ଯାଆନ୍ତି, ସେ ସେମିତି ଗୁଡ଼ାଏ ଏଣୁ ତେଣୁ ପଚାରିଲେ । ଯାହା ପାରିଲି ଉତ୍ତର ଦେଲି । ସେ କହିଲେ ଇନ୍‌କ୍ୟୁରେବଲ ଅର୍ଥାତ୍ ଭଲ ହୋଇ ପାରିବନି । ସେ ପୁଣି କହିଲେ, ଓନ୍‌ଲି ଓଆନ୍ ମେଡିସିନ୍; ଦାଟ୍ ଇଜ...( କେବଳ ଗୋଟିଏ ମାତ୍ର ଔଷଧ ଅଛି । ସେଇଟି ହେଉଛି ।) ମୁଁ ଅତି ବ୍ୟସ୍ତ ଭାବରେ ପଚାରିଲି—କୁହନ୍ତୁ, ପାରିଲେ କିଣିବି ।

—ନୋ, ନୋ, ଅସମ୍ଭବ—ଭାରି ଦାମିକା ।

—କେତେ ପଡ଼ିବ ?

—ଅନ୍ତତଃ ଏକ ହଜାର ।

—ଋଣ କରି ଆଣିବି ।

—ଲୁସି ସାହେବାଙ୍କ ଭାରି ହସ ମାଡ଼ିଥିଲା । ସେ ଏତେ ଜୋରରେ ହସିଲେ ଯେ ମନେ ହେଲା ସେ ବଡ଼ ପାଟିରେ ଚିତ୍କାର କରି କାହାକୁ ରକ୍ଷାକର, ରକ୍ଷାକର ବୋଲି ଡାକୁଛନ୍ତି । ସତେ ମୁଁ ଯିମିତି ତାଙ୍କୁ ଦୁଆର ଘର ବନ୍ଦ କରି ଅତ୍ୟାଚାର କରୁଛି । ମୁଁ ଦୁଆର ଫିଟେଇ ଚାଲିଯିବାକୁ ଉଦ୍ୟତ ହେବା ମାତ୍ରେ ସେ ମତେ ଓଟାରି ଆଣିଲେ । କହିଲେ, ଏଇଠି ବସ । ମୁଁ ତମକୁ ଆହୁରି ବହୁତ କଥା ପଚାରିବି । ଅଚ୍ଛା, ତୁମେ ବିବାହ କରିଛ ?

—ନାଁ । ।

—କୌଣସି ସ୍ତ୍ରୀଲୋକର ସଂସ୍ପର୍ଶରେ ଆସିଛ ?

—ନାଁ ।

—କୌଣସି ଯୁବତୀ ବିଷୟ ଚିନ୍ତା କରିଛ ?

—ନାଁ ।

ତୁମେ ମତେ ବିବାହ କରିପାରିବ ? ବେଶିଦିନ ପାଇଁ ନୁହେଁ, ମାତ୍ର ତିନିବର୍ଷ ପାଇଁ । ମୁଁ ତିନିବର୍ଷ ପାଇଁ ଇଣ୍ଡିଆକୁ ଯାଇ ସେଠାର ବୈଦ୍ୟଶାସ୍ତ୍ର ବିଷୟରେ ରିସର୍ଚ୍ଚ କରିବାକୁ ଚାହେଁ; ସେଥିଲାଗି ଜଣେ ବନ୍ଧୁ ଦରକାର । ତୁମେ ସେ ଦାୟିତ୍ୱ ଗ୍ରହଣ କରିପାରିବ ?

ମୁଁ ନିଜକୁ ଅଯୋ୍ଗ୍ୟ କରି ନେଇଥିଲି । ତା'ପରେ ଲୁସିର କଥାଗୁଡ଼ାକ ଭାରି ମିଠା ଲାଗିଥିଲା । ତା ଦେହର ଗନ୍ଧରେ ବିଭୋର ହୋଇ ଉଠିଲାବେଳକୁ ସେ କହିଥିଲା, ଏଠି ନୁହେଁ କି ଏବେ ନୁହେଁ । ଯୁ ରିଙ୍ଗ ମି ଟୁଡ଼େ । ଅର୍ଥାତ୍ ମତେ ଆଜି ଡାକିବ ।

ମୁଁ ଯେତେବେଳେକୁ ହାଇସର୍ଜ୍ ।ଇଫକୁ ରିଙ୍ଗ୍ କରେ,ସେତେ-ବେଳେ କଲିଂବେଲର ସୁଇଚ ଟିପିଥିଲି । ଦେଖିଲି, ଠିକ୍ କି ପରେ ଲୁସି ଗୋଟାଏ ଚମଡ଼ା ସୁଟ୍‌କେଶ ଧରି ମୋ ଘରେ ହାଜର । ଲୁସି କହିଲା, ଏଣିକି ଆମେ ଦୁହେଁ, ସ୍ୱାମୀସ୍ତ୍ରୀ । ମୁଁ ତୁମର ଏଇଠି

ରହିବ । ସୁଟ୍‌କେଶଟିକୁ ଦେଖେଇ କହିଲା, ଏହାହିଁ ମୋର ସର୍ବସ୍ୱ । ତୁମେ ମୋ ପାଇଁ ବ୍ୟସ୍ତ ହେବନି । ମୁଁ ରୋଜଗାର କରିବି, ତୁମକୁ ପୋଷିବି । ତୁମେ ପାଠପଢ଼ । ମୋର ମଧ୍ୟ ଅଳ୍ପ ବର୍ଷକ ପରେ ପଢ଼ା ଶେଷ ହେବ । ତା'ପରେ ଇଣ୍ଡିଆକୁ ଯିବା । ସିଧା ମତେ ତୁମ ଘରକୁ ନେଇଗଲେ ଭଲକଥା, ନଚେତ୍ ମତେ ନେଇ କୌଣସି ହୋଟେଲରେ ରଖିଦେଇ ପାର । ଏତକମାନେ ମୁଁ ତୁମଠୁ ଚାହେଁ, ମୋର ପରିଚୟ ହେବ, ମୁଁ ମିଃ ସାମଲଙ୍କ ସ୍ତ୍ରୀ । ତୁମେ ନାହିଁ କରିବନି, ହଁ କରିବ ।

ତା'ପରେ...

ତା'ପରେ ଲୁସି ନିର୍ମଳ, ଅକୃତ୍ରିମ ସ୍ନେହରେ ମତେ ନିବିଡ଼ ଭାବରେ ବାନ୍ଧିରଖିଲା ଦୁଇବର୍ଷ ଧରି । ସନ୍ଧ୍ୟାହେଲେ ଦୁହେଁ ଏ ପାର୍କ ସେ ପାର୍କ ବୁଲୁ, ଛୁଟିହେଲେ ଲୁସି ମତେ ଲେକ୍ ଭ୍ରମଣରେ ନିଏ । କେବେ କେବେ ପ୍ୟାରିସକୁ ଚାଲିଯାଉ । ଲୁସିର ନରମ ନରମ ମାଂସଳ ଦେହ, ଗୋରା ଗୋରା ଚମଡ଼ା, କଳା କଳା ବାଳଗଣ୍ଡିକ ଭାରି ଭଲଲାଗେ । ଇଣ୍ଡିଆର ଝିଅମାନେ କିମିତି ମୁଣ୍ଡ କୁଣ୍ଡାନ୍ତି, କିମିତି ବେଣୀ, ଜୁଡ଼ା ପକାନ୍ତି, ଓଠରେ ଲିପଷ୍ଟିକ ଲଗାନ୍ତିକି ନାହିଁ, ଶାଢ଼ୀ କିମିତି ପିନ୍ଧନ୍ତି, ସବୁ ବୁଝି ନେଇଥିଲା । ଶାଢ଼ୀ ପିନ୍ଧୁ ପିନ୍ଧୁ ପୂରା ଲଙ୍ଗଳା ହୋଇ ପଡ଼ୁଥିଲା । ବେଣୀ ବାନ୍ଧି ନ ପାରିଲେ, ମତେ କହେ ବେଣୀ ବାନ୍ଧିଦିଅ ବୋଲି । ମତେ ହାତରେ ପାନିଆ ଧରି ତା'ର ବାଳ କୁଣ୍ଡାଇବାକୁ ପଡେ ।

ଦୁହିଙ୍କ ପାଇଁ ଦୁ'ଟି ଖଟ ।

ମୁଁ ରାତିଯାକ ତା'ର କଥା ଭାବି ଭାବି ଶୋଇ ପାରେ ନା । ଏକାଠି ଶୋଇବାକୁ ସେ ମନାକରେ । ଥରେ ଥରେ ରାତିରେ ଉଠି ମୁଁ ତା ଖଟପାଖକୁ ଯାଏ । ଠିକ୍ ତାକୁ ଧରିବାକୁ ଗଲାବେଳେ ସେ କହେ, Not now, not here, but in India. (ନଟ୍ ନାଓ, ନଟ୍ ହିଅର, ବଟ୍ ଇନ୍ ଇଣ୍ଡିଆ ।)

ଲଣ୍ଡନରେ ତିନୋଟି ବର୍ଷରୁ ଦୁଇଟି ବର୍ଷ ଭମିତ ଭମିତରେ କଟିଯାଏ । ଉପଭୋଗ୍ୟା ଲୁସିର ଉପଭୋଗରୁ ମୁଁ ବଞ୍ଚିତ ହୁଏ । ପ୍ରତ୍ୟେକ ରାତିରେ ମୁଁ ତା ପାଖକୁ ଟାଣି ହୋଇଯାଏ । କେବଳ ଓଠ ଛଡ଼ା ସେ ଦେହର କୌଣସି ଅଂଶକୁ ଛୁଇଁବାକୁ ଦିଏ ନା । ସେ କହେ—ଗୋଟିଏ ଚୁମ୍ବନହିଁ ସ୍ତ୍ରୀଠାରୁ ସ୍ୱାମୀର ପ୍ରାପ୍ୟ । ବ୍ୟଭିଚାରପୂର୍ଣ୍ଣ ଲଣ୍ଡନ ସହର ଭିତରେ ମୁଁ ଦେଖିଲି ଲୁସି ଏକ ଅଦ୍ଭୁତ ବ୍ୟତିକ୍ରମ । ବିବାହର ସଂଜ୍ଞା ବିରୁଦ୍ଧରେ ଲୁସି ଯିମିତ ମନେ ମନେ ଭୀଷଣ ସଂଗ୍ରାମ କରି ଚାଲିଚି । କୌଣସି ଶାସ୍ତ୍ର, କୌଣସି ଧର୍ମ, କୌଣସି ଇତିହାସରେ ବିବାହ ଯେ ଦୈନିକ ଗୋଟିଏ ଚୁମ୍ବନରେ ସୀମିତ, ଇତିହାସ-ଛାତ୍ର ରୁଦ୍ରଚରଣ ସାମଲ କେଉଁଠି କେବେ ପଢ଼ି ନ ଥିଲା । ମନେହେଲା, ସେ ଯିମିତ ଏକ ଅପ୍ରକାଶିତ ପାଣ୍ଡୁଲିପିକୁ ଉଦ୍ଧାର କରି ପଢ଼ିଚାଲିଚି । ଯା ଦେହରେ ଏତେ ରୂପର ସମ୍ଭାର, ଯା ଦେହ ଶିଳ୍ପୀର ମଡ଼େଲ ଲାଗି ଗଢ଼ା, ସେ ଯେ ସିଷ୍ଟର ନିବେଦିତା ଭଳି ବ୍ରହ୍ମଚାରିଣୀ ହୋଇ ଯିବେ ତାର ଧାରଣା ସୁଦ୍ଧା ନଥିଲା । ତା ଛଡ଼ା ଯିଏ ବିବାହକୁ ସ୍ୱୀକାର କରେ, ସେ ତ ମାତୃତ୍ୱକୁ ଲୋଡ଼ିବା କଥା । ମୁଁ ଲୁସି ସହିତ ଏ ବିଷୟରେ ବହୁତ ଯୁକ୍ତି କରେ, ସେ କିନ୍ତୁ ନିରୁତ୍ତର ରହେ ।

ଦୁହିଁଙ୍କର ପରୀକ୍ଷା ସରିବାପରେ, ଆମେ ଚାଲିଆସିଲୁ ଇଣ୍ଡିଆକୁ । ବାପା ଲୁସିକୁ ବୋହୂ ଭାବରେ ଗ୍ରହଣ କଲେ । ଲୁସିର ବ୍ୟବହାରରେ ସେ ମୁଗ୍ଧ । ନିଜ ଝିଅଠୁ ବଳି ଭଲ ପାଇଲେ ଲୁସିକି । ତିନୋଟି ମାସ ଭିତରେ ଲୁସି ଆମ ଘରେ ଏକାବେଳକେ ଭାରତୀୟ ତଥା ଓଡ଼ିଆଣୀ ପାଲଟିଗଲା । ସେ ଜଣେ ଡାକ୍ତରାଣୀ ବୋଲି କାହାରିକି ପରିଚୟ ଦିଏ ନା । ମତେ ବି ଆଗରୁ ମନା କରିଦେଇ ଥାଏ । ବାପା କିନ୍ତୁ ଜାଣି ନ ଥାନ୍ତି ଯେ ତା ସହିତ ମୋର ବିବାହ କେବଳ ତିନିବର୍ଷ ପାଇଁ । ସେଥିରୁ ଦୁଇବର୍ଷ ବିଦେଶରେ କଟେଇ ଦେଇ ଅଉ ବର୍ଷକର ବଧୂତ୍ୱକୁ ମେଣ୍ଟାଇବା ପାଇଁ ଲୁସି ଆସିଚି ଇଣ୍ଡିଆକୁ ।

ଇତିମଧ୍ୟରେ ଆଠମାସ କଟିଗଲାଣି । ଲୁସି ସମୟ ସୁବିଧା ଦେଖି ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲି ଆସେ । ଘରେ ବସି କ'ଣ ଗୁଡ଼ାଏ ଖାତାରେ ଟିପେ । ତାର ଡାକ୍ତରୀଭାଷା ମୁଁ ବୁଝି ପାରେ ନା । ଆଲୁଅ ଜାଳି ରାତି ଦୁଇଯାଏଁ ବସି ଲେଖି ଲେଖି ଥକେ ଥକେ ଲାଇଟ ନ ଲିଭେଇ ଶୋଇପଡ଼େ । ଉଜ୍ଜ୍ୱଳ ଆଲୋକ ମଧ୍ୟରେ ମୁଁ ତାର ମୁହଁଟିକୁ ଏକ ଲୟରେ ଚାହିଁ ରହେ । ଧୀରେ ଧୀରେ ମୋ ଓଠ ତା ଓଠ ପାଖକୁ ଲାଗି ଆସେ । ମାନସିକ କ୍ଳାନ୍ତିପରେ ଲୁସି ଶୋଇଛି, ଉଠେଇଲେ ପାପ ହେବ ବୋଲି ମନେ ମନେ ଭାବେ । ତା ଓଠକୁ ସ୍ପର୍ଶ ନ କରି ମୋ ଓଠ ଉଠି ଆସେ ।

କଣ୍ଟ୍ରାକ୍ଟ ସରିବାକୁ ମାତ୍ର ଦୁଇଦିନ ବାକି । ମୁଁ ସେ ବିଷୟରେ ଲୁସିକୁ କେବେ ପ୍ରଶ୍ନ କରେ ନା । ସେ ମଧ୍ୟ ମତେ କିଛି କହେ ନା । ଭାବେ, ଲୁସି ବୋଧହୁଏ ଭୁଲି ଯାଇଛି । ଭୁଲୁ, ଭଲ ।

ଆଜି ରାତି ପାହିଲେ—କଣ୍ଟ୍ରାକ୍ଟ ସରିବ । ରାତି ପାହିବାକୁ ଆଉ ଅଧ ଘଣ୍ଟାଏ ବାକି । ଲୁସି ଧଡ଼ପଡ଼ କରି ଉଠି ଆସି ମତେ ଶେଯରୁ ଉଠେଇ କହିଲା – ମିଃ ସମଲ୍ । ( ସାମଲ୍‌କୁ ସମଲ୍ ବୋଲି ସମ୍ବୋଧନ କରେ ), ଆଇ ୱାଣ୍ଟ ଇଅନ୍ ଇଣ୍ଡିଅନ୍ ଚାଇଲ୍ଡ ଅଫ୍ ମାଇନ୍ । (ମୁଁ ଜଣେ ଭାରତୀୟ ସନ୍ତାନ ଚାହେଁ, ସେ କିନ୍ତୁ ମୋର ହୋଇଥିବ । ) ଟୁଡ଼େ ଇଜ୍ ଲାଷ୍ଟ ଡ଼େ । ଗିଭ୍ ମି ଏ ଚାଇଲ୍ଡ଼ ସମହାଉ ।

ଲୁସିକି ଦେଖିଲି, ତା ଗୋରା ମୁହଁଟା ଅତି ଲାଲ ଦେଖା ଯାଉଛି । ଦେହ ତା'ର ଅତି ଗରମ ହୋଇ ଉଠିଛି । କହିଲି, ମୁଁ କ'ଣ କରିପାରେ ? ଜୀବନରେ ସମସ୍ତେ ସବୁ ଦେବା ସମ୍ଭବ କିନ୍ତୁ ସନ୍ତାନଟିଏ ଦେବା ସମ୍ଭବ ନୁହେଁ । ମଣିଷ ଖାଲି ଚାହିଁଲେ ତା ପାଇ ପାରେ ନା । ପାଇବା ଲାଗି ଯେ ମଣିଷ ପ୍ରୟାସ କରେ ନା ତା ନୁହେଁ । କିନ୍ତୁ ସବୁ ଜମି ଉର୍ବର ନୁହେଁ । ତୁମେ ଜଣେ ଡାକ୍ତର, ଯ୍ୟାଦା ବେଶି ବୁଝାଇବା ମୋ ପକ୍ଷରେ ଧୃଷ୍ଟତା ହବ ।

ଲିପି ହାତ ଘଡ଼ିକି ଦେଖିଲା, ଆଜି ମୋଟେ ଦେଢ଼ଘଣ୍ଟା ବାକି । ଏଇଲେ ରାତି ପାହି ଯିବ । କୁକୁଡ଼ା ବୋବେଇବେ । ପୂଜାଘରେ ଅଣି ଟାହା ଦେଇଯିବ । ଲିପି ଏ ଘରେ ସକାଳ ପାଅଁ ଯାନ୍ତୁ ଅଧିକ ମୁହୂର୍ତ୍ତେ ବି ରହିବାକୁ ଚାହେଁ ନା ।······ସିପ୍ରା ପଢ଼ୁଥିଲା, ପଢ଼ା ବନ୍ଦ କରିଦେଇ କହିଲା, କହିଲି ମୂର୍ଚ୍ଛନା, ତା'ପରେ କ'ଣ ହେଇଥିବ ?

ମୁଁ ସେତେବେଳକୁ ଅଣନିଶ୍ୱାସୀ । ତା'ପରେ କ'ଣ ଯେ ଘଟିଥିବ ମୁଁ କଳ୍ପନା ସୁଦ୍ଧା କରି ପାରି ନଥିଲି । ସିପ୍ରା ମତେ କୁଣ୍ଢେଇ ଧରି କହିଲା, ତା' ପରେ ··? ତା' ପରେ ରୁଦ୍ରବାବୁଙ୍କ କୁଣ୍ଢେଇ ପକେଇଥିଲା ଲିପି···ଲିପି ଗଲାବେଳେ ରୁଦ୍ରବାବୁଙ୍କ କହି ଯାଇଥିଲା, ଯଦି ଏଥିରେ ନ ହୁଏ, ମୁଁ ପୁଣି ଥରେ ଫେରି ଆସିବି, ମୁଁ ମୋର ଜଣେ ଭାରତୀୟ ସନ୍ତାନ ଚାହେଁ । ଠିକ୍ ତୁମ ରୂପ, ତୁମ ଦେହର ବର୍ଣ୍ଣ, ତୁମର ବୁଦ୍ଧିକୁ ନେଇ ସେ ଜନ୍ମ ହେବା ଦରକାର ।

ସିପ୍ରା ଏ ଗଳ୍ପଟି ମତେ ପଢ଼େଇ ସାରିବା ପରେ ରୁଦ୍ରବାବୁଙ୍କୁ ଦେଖିବାପାଇଁ ଭାରି ଇଚ୍ଛା ହେଇଥିଲା ମୋର ।

ସିପ୍ରା ତା ଅବଦନ ଆସିଲାବେଳେ ହ ଭରେ ଗୁଡ଼ାଏ ଅଧା ପୋଡ଼ା ସିଗାରେଟ ଧରି ଆସିଥିଲା । କହିଲା, ଏଥିରୁ ତୁ ଗୋଟିଏ ନେ, ମୁଁ ଗୋଟିଏ ନେଉଛି । ଧାଇଁଯ ଦିଅସିଲି ଅଣିବୁ ଖାଇବା । ଧୂଅଁ ଗୁଡ଼ାକ ସିନା ଭଲ ଲାଗିବନି, ରୁଦ୍ରବାବୁଙ୍କ ଓଠରେ ଏ ସିଗାରେଟଗୁଡ଼ାକ କେତେ ସମୟ ପାଇଁ ଥିଲା, ପୁଙ୍କିଲାବେଳେ, ସେଇ ଓଠର ସ୍ପର୍ଶରୁ ତ କିଛିଟା ଆନନ୍ଦ ମିଳିବ !

ସିଗାରେଟଗୁଡ଼ା ତୁ କମିତ ଲୁହର୍ ସଂଗ୍ରହ କଲୁ ବୋଲି ସିପ୍ରାକୁ ପଚାରିଥିଲି । ସେ କହିଥିଲା, ମୁଁ ଗଲା ବୁଇଦିନ । ଲ

ଲୁସିର ଭୂମିକା ଗ୍ରହଣ କରେଚି । ଲୁସି କ'ଣ ତାଙ୍କୁ ଖାଇବାକୁ ଦେଉଥିଲା କେଜାଣି, ମୁଁ କିନ୍ତୁ ସକାଳୁ ତାଙ୍କ ଟେବୁଲ ଉପରେ ଚାରିଖଣ୍ଡ ଟୋଷ୍ଟ ଥୋଇଦେଇ ଆସୁଚି । ଅସିଲାବେଳେ ତାଙ୍କ ଟେବୁଲ ତଳେ, ଅଷ୍ଟ୍ରେ ଦେହରେ ଥିବା ଏଇ ସିଗାରେଟଗୁଡ଼ିକ ସଂଗ୍ରହ କରୁଚି ।

—ତୋ ବାପା ଯଦି ଜାଣନ୍ତି ?

—ବାପା ? କାହାର ବୋଉ ଆଉ ଜାଣିଛି ସେ । ଏସବୁ ଜନ୍ମଘର ଅଲକୂଳ ପାଇ ପାରିବେନି । ଜାଣି ଥାଆନ୍ତେ ଯଦି, ଦାଦାର ବାହା ହେବାର ଚାରିମାସ ପରେ ଝିଅ ହେଇ ନ ଥାଆନ୍ତା । ତୁ ବୋଧ-ହୁଏ ଜାଣୁ ନା, ମୁଁ ବାପର ଝିଅ ନୁହେଁ, ମା'ର ଝିଅ ।

ସିପ୍ରା ଶ୍ୟାମା, ଅର୍ଥାତ୍ ସାବନା । ଖର୍ବକାୟା ହେତୁ ବାଳ ଗଣ୍ଡିକ ଗୋଡ଼ତଳକୁ ପଡ଼େ । ସବୁଠୁ ସୁନ୍ଦର ତା'ର ଆଖି ଯୋଡ଼ିକ । ତ' ଦେହକୁ ଦେଖି ଆକୃଷ୍ଟ ନ ହେଲେ ମଧ୍ୟ ଯେ କୌଣସି ଯୁବକ ତା'ର ଦୀର୍ଘ କେଶଗୁଚ୍ଛ, ସେଇ ଦୁଇଟି ଆଖି ଆଉ ତା'ର ଧୀର ଲଚକ ଲଚକ ଚାଲିକି ଦେଖି ଆକୃଷ୍ଟ ହୋଇ ପଡ଼ିବା ସ୍ୱାଭାବିକ । ରୁଦ୍ରବାବୁ ସିପ୍ରା ପାଖରୁ ତାଙ୍କ ଜୀବନର ଗୋଟେ ଅଂଶ ବର୍ଣ୍ଣନା କରି ଏଡ଼େ ବଡ଼ ଚିଠି ଲେଖିଲେ କାହିଁକି, ମୁଁ ବୁଝି ପାରି ନ ଥିଲି ।

ସିପ୍ରା ରୁଦ୍ରବାବୁଙ୍କୁ ଧରିଦେବାପାଇଁ ଇଚ୍ଛାକଲେ ମଧ୍ୟ ସହଜେ ଧରା ଦିଏ ନା—ବୋଧହୁଏ କିମିତି କାହାକୁ କେଉଁ ସମୟରେ ଧରା ଦିଆଯାଏ, ସେ କୌଶଳଟା ସେ ଶିଖିଥିଲା ତା ଦାଦାଠୁ । ସିପ୍ରା ପ୍ରତ୍ୟେକ ଦିନ ଅସି, ରୁଦ୍ରବାବୁଁ ଆଜ ବଜାରଟା-ଯାଏ ମୋ ସାଙ୍ଗରେ ବୁଲିଲେ, ହେଇ ଏଇ ଶାଢ଼ୀଟା କିଣେଇ ଦେଲେ, କାଲି କହିଚନ୍ତି ସିନେମା ଦେଖେଇ ନେବାକୁ ଇତ୍ୟାଦି ନାନା କଥା କହି ହୁଏ । ମତେ ବି ନିମନ୍ତ୍ରଣ କରେ । ସିବାକୁ ଇଚ୍ଛାଥିଲେ ମଧ୍ୟ ମୁଁ ସିପ୍ରା ସାଥିରେ କୁଆଡ଼େ ଯାଇ ପାରେ ନା ।

ସିପ୍ରାର ବାପା ସିପ୍ରାର ଭାଷାରେ ସିନା ବୋଉଙ୍ଗ୍‌, ରୁଦ୍ରବାବୁଙ୍କ ଦୃଷ୍ଟିରେ ଭାରି କଡ଼ା । ଏତେବଡ ଗୋଷପଭଳି ଚେହେରା । ଆଖିରେ ବଧେ ବହଲର ମୋଟା ଚଷମା । ବାଳ-ଗୁଡ଼ାକ ନାହାନ୍ତି ରୁଷ । ପାଟିରେ ଏବାଥରେ ଦୁ' ଛଅଟା ପାନଖିଲ ଗୁଞ୍ଜି ଦେଇ ଦିନ ସାରା ଗୋଡ଼ିବା ଚାଲିଥାଏ । ଶୁଣିଚ ସେ କୁଆଡ଼େ ଖାଡ଼ରେ ପାଣି ପିଇଲା ଭଳି ଢ଼କ ଢ଼କ ମଦଗୁଡ଼ାକ ପିଇ ଯାଆନ୍ତି । ରେଲବାଇ ବିଭାଗରେ କାମ କରୁଥିଲେ । ସସ୍‌ପେଣ୍ଡେଡ଼ ହୋଇ ଏବେ ଘରେ ବସିଚନ୍ତି । ଗୃହଗୀବାଳ ମଧ୍ୟରେ ଏଠି ଖଣ୍ଡିଏ ଘର, ଆଉ ପଶ୍ଚିମବଙ୍ଗ ବାଙ୍କୁଡ଼ା ଜିଲ୍ଲାର ଛୋଟ ଗୋଟେ ଗାଁରେ ଅଉ ଗୋଟିଏ ଘର ଓ ଜମିବାଡ଼ି କିଣିଚନ୍ତି । କଥା କହନ୍ତି ଯେ ମୁହଁରେ ବାଟୁଲି ବାଜିବନି । ଶତ୍ରୁଙ୍କେ ଅନେଶତ ମିଛ । ତାଙ୍କ ଯୁବାବସ୍ଥାରେ ସେ କୁଆଡ଼େ ଗୋଟେ ଗୁଳି ଦେଇଁରେ ଦୁ'ଟା ବାଘମାରି ନିପୁରା ରାଜାଙ୍କଠୁ ହଜାରେ ଟଙ୍କା ପୁରସ୍କାର ପାଇଥିଲେ । ସେ ଯାହା କହନ୍ତି, ତା'ର କୌଣସି ପ୍ରମାଣ ଓ ନମୁନା ଦେଖେଇ ପାରନ୍ତି ନାହିଁ ବୋଲି ଅମେ ଭାବୁ ମିଛ କହୁଚନ୍ତି । ଦିନବେଳେ ଦାଣ୍ଡପଟ ଦୁଆର ଟେଖୋଲ୍ ଖୋଲ୍ ଭିତରୁ ଅଲସେସିଅନ କୁକୁର ଭୁକିଲାଭଳି ଏତେ ବଡ଼ ପାଟି କରି କହନ୍ତି, କିଏ ? ଯିଏ ହୁଅ ପଛେ, ଦୁଆର ପକେଇ ସିଧା ଇଠିକି ଆସ !

ରୁଦ୍ରବାବୁ ଦିନେ ଏଇ ଅଲସେସିଅନ ସିପ୍ରାବାପା କବଳରେ ପଡ଼ିଥିଲେ । ସିପ୍ରା ଯେଉଁ ସମୟ ଦେଇଥିଲା, ସେଇଟା ଦିନ ବେଳର ସମୟ କି ରାତବେଳର ସମୟ, ରୁଦ୍ରବାବୁ ସିପ୍ରାର ଆଖିର ଆକର୍ଷଣ ଖେଳରେ ଭୁଲିଯାଇ ଦିନ ବାରଟା ବେଳେ ପହଞ୍ଚି ଯାଇଥିଲେ । ଭିତରୁ ଏଇ ରୁଦ୍ର କଣ୍ଠର ଗର୍ଜନରେ ରୁଦ୍ରବାବୁଙ୍କ ହାଲ୍‌କା ଶୁଖି ଯାଇଥିଲା । "ସିଧା ଏଇଠିକି ଆସ" ଏ ଆଦେଶକୁ ଲଙ୍ଘନ ନକରି ସେ ସିଧା ସିପ୍ରାବାପା ପାଖରେ ପହଞ୍ଚିଥିଲେ । ବସ୍ କହିବା ମାନେ ବସିଥିଲେ ଉଠ କହିବା ମାନେ ଉଠିଥିଲେ । ପାଞ୍ଚ ସାତଥର ଉଠ ବସ ପରେ ବାପା

ଅସିବାର କାରଣ କ'ଣ ବୋଲି ପଗ୍ଭରିବାମାତ୍ରେ ରୁଦ୍ରବାବୁ କହିଥିଲେ, ସିପ୍ରାଦେବୀ ଅଳ୍ପ ଏତକବେଳକୁ ଅସିବାକୁ ମତେ କହିଥିଲେ, ସେଇଥିପାଇଁ ଅସିଚି ।

ତୁମର ନାମ ?

ରୁଦ୍ର

ଘର ?

ଏଇ ସହରରେ ।

କାହା ପୁଅ ?

ବିଦ୍ୟାଧର ସାମଲଙ୍କର ?

ବିଦ୍ୟାଧର ସାମଲ । ଯିଏ ପୁରୀର ଏସ୍. ଡି. ଏମ୍ ଥିଲେ, ସେଇଟିକି ?

ନାଇଁ ସିଏ ନୁହଁନ୍ତି, ତାଙ୍କର ସାନଭାଇ ଗଦାଧର ସାମଲ ଏସ. ଡି. ଏମ୍ ଥିଲେ । ସେ ବର୍ତ୍ତମାନ ହିମାଚଳ ପ୍ରଦେଶରେ । ମୁଁ ତାଙ୍କର ବଡ଼ଭାଇ ବିଦ୍ୟାଧର ସାମଲ, ଯିଏ ଅଗେ ଡାକ୍ତର ଥିଲେ, ତାଙ୍କର ପୁଅ ।

ଓଃ ଅଇ ନୋ ହିମ୍ । ତୁମେ କ'ଣ କର ?

ଲଣ୍ଡନରୁ ଫେରି ବ୍ୟବସାୟ କରୁଚି ।

ତୁମେ ଲଣ୍ଡନ ଯାଇଥିଲ ?

ଇଏସ ସାର୍—ତିନି ବର୍ଷଥିଲି । ସେଠି ଅକ୍ସଫୋର୍ଡ ୟୁନିଭରସିଟିରେ ପଢ଼ୁଥିଲି ।

କ'ଣ ପଢ଼ୁଥିଲ ?

ଇତିହାସ ।

ଏବେ କ'ଣ କରୁଚ କହିଲ ?

ବ୍ୟବସାୟ ।

କି ବ୍ୟବସାୟ ?

ସୋରିଷ ତେଲଠାରୁ ଆରମ୍ଭ କରି, ଇଲେକ୍ଟ୍ରୀ ଫଙ୍ଗା ଅଦର ଏଜେଣ୍ଟ ।

ଭେରିଗୁଡ୍ !'

ଅଚ୍ଛା ତୁମେ ଲୁସି ବୋଲି ଗୋଟିଏ ଇଂଲଣ୍ଡ ଝିଅ ଆମର ଏଠି ଅସି ବୋଧହୁଏ ହୋଇ ବଡ଼ିଛି ଜାଣ ?

ଜାଣେ । ଏକଦା ସେ ମୋର ସହଧର୍ମିଣୀ ଥିଲେ, ଏବେ ନାହାଁନ୍ତି । ସେ ତାଙ୍କ ଦେଶକୁ ଚାଲିଗଲେଣି । ଏଠିକି ଆୟୁର୍ବେଦିକ୍ ମେଡ଼ିସିନ ଉପରେ ରିସର୍ଚ୍ଚ କରିବାପାଇଁ ଅସିଥିଲେ । ରିସର୍ଚ୍ଚ ସରିଗଲା । ତା ଛଡ଼ା ମୋ ସହିତ ମାରେଜ-କଂଟ୍ରାକ୍ଟର ସମୟ ମଧ୍ୟ ସରିଗଲା, ସେଇଥିପାଇଁ ଚାଲିଗଲେ ।

ତାହାହେଲେ ତୁମେ ସେଇ ରୁଦ୍ର ? ଲୁସିଠି କନ୍ତୁ ଖବର ଭଲ ପିଲା । ମୋର ବଡ଼ ଝିଅ ସହିତ ତା'ର ଏକରକମ ଘନିଷ୍ଠ ବନ୍ଧୁତା ଥିଲା ।

ତା'ପରେ ସିପ୍ରାର ବାପା କଥାକୁ ବଙ୍କେଇ ନେଇ କହିଲେ, ସିପ୍ରା ସହିତ ତୁମର ପରିଚୟ କିମିତି ହେଲା ?

—ଏ ପାଖରେ ଅମେ ଯେଉଁଠି ଅମର ଅଫିସ ଖୋଲିଛୁ ସେଇ ଘରେ ଅଉ ଗୋଟିଏ ଝିଅ ରହେ । ସିପ୍ରାଦେବୀ ସେଇଠିକି ଯାଆନ୍ତି । ଯିବା ଅସିବା କରିବା ମଧ୍ୟରେ ଯାହା ଟିକିଏ ଦେଖା ସାକ୍ଷାତ ସେତିକି ।

ତୁମେ ତାକୁ ଭଲ ପାଅ ?

ରୁଦ୍ରବାବୁ ଚୁପ୍ ରହନ୍ତି ।

ତା'ପରେ ସିପ୍ରାର ବାପା ତଳମହଲରୁ ଉପର ମହଲକୁ ଉଠାଯାଇ ନିଅନ୍ତି । ଅଲମିରା ଭିତରର ନାଲି ନେଳ କାଚ ଗୁଡ଼ାକ ତାଙ୍କୁ ତୁହାଇ ତୁହାଇ ଡାକେ । ସେ ଏଇ ଡାକରେ ଅଥୟ ହୋଇ ପଡ଼ନ୍ତି । ରୁଦ୍ର ତୁମେ ଟିକିଏ ଏଠି ବସିଥିବ, ଉପରେ ଟିକିଏ ଡ଼ ଲୁଚ, ମୁଁ ଶୁଣି ଅସେ କହି ଚାଲିଯାଆନ୍ତି । ଅଉ ଫେରିବାକୁ ତାଙ୍କର ମନେ ପଡ଼େନା । ସେଇ କାଚ ଦେହର ନାଲି ନେଳ ପାଣି ଭିତରେ ପ୍ରିୟତମାର ପ୍ରେତାତ୍ମାକୁ ଭଲ

ଭାବରେ ଦେଖି ପାରନ୍ତ ସେ । ଦିନେ ଏଭଳି ନାଲିନେଳି ପାଣିର ନିଶାରେ ବିଭୋର ହୋଇ ସେ ନିଜ ପ୍ରିୟତମାଙ୍କୁ ଧରିବାକୁ ଯାଇ ଯାଇ ପ୍ରିୟତମା ସେଇଭଳି ନିଶାରେ ଖସି-ପଡ଼ିଥିଲେ, ଉନତାଳ ଉପରୁ ତଳକୁ । ତା'ପରେ ସବୁ ଶେଷ ।

ରୁଦ୍ରବାବୁ ବହୁ ଅପେକ୍ଷା ପରେ ଘରଭିତରୁ ଗୁଳିଯିବାକୁ ଉଦ୍ୟତ ହେଉ ହେଉ ସିପ୍ରା ଆସି ପହଞ୍ଚେ । ରୁଦ୍ରବାବୁଙ୍କୁ ଟାଣି ନେଇଯାଏ ନିଜ କୋଠରୀ ଭିତରକୁ । କାନ୍ଥର ଗୃହପଟେ ରୋମାନ୍ ପେଇଣ୍ଟିଂ । ଧର୍ମନାମରେ କଦମ୍ବ ଗଛରେ କୃଷ୍ଣଙ୍କୁ ବସେଇ, ଗୋପାଙ୍ଗନାଙ୍କ ଲୁଗାକୁ ଗଛ ଉପରେ ଝୁଲେଇ, ଉଲଗ୍ନ ଅବସ୍ଥାରେ ସେମାନଙ୍କୁ ପାଣି ଭିତରେ ବୁଡ଼େଇ ଯିମିତି ହିନ୍ଦୁମାନେ କାମଦେବ ଓ ରତି ଦେବୀଙ୍କୁ ପୂଜା କରଥାଆନ୍ତି, ସେଇଭଳି ସିପ୍ରା ଘରେ ଗୁଡ଼ାଏ ଧାର୍ମିକ ଚିତ୍ରର ସମାହାର ଦେଖିବାକୁ ମିଳେ । ଯେ କୌଣସି ଯୁବକ ଯୁବତୀର ପ୍ରାଣ ଏଘରକୁ ଗଲେ କାମଜର୍ଜରିତ ହୋଇ ପଡ଼ିବା ସ୍ୱାଭାବିକ ।

ରୁଦ୍ରବାବୁ ଏଇ ଘରେ ଅଛନ୍ତି । ସିପ୍ରା ଦେହରେ ବ୍ଲାଉଜ ନ ଥାଏ । ଉପରେ ପିନ୍ଧିଥାଏ ଗୋଟିଏ ଫିଲ୍‌ମିଲ୍ ଶାଢ଼ୀ । ତା' ଅଙ୍ଗର ସମସ୍ତ ତରଙ୍ଗ ଉଚ୍ଛୁଳି ଜୁଆର ଆକାରରେ ରୁଦ୍ରର ସମଗ୍ର ମନକୁ ଗ୍ରାସକରି ପକାଏ । ସେ ମନେ କରେ ସେ କେବଳ କୂଳର ଏକ ବିସ୍ତୀର୍ଣ୍ଣ ବାଲୁକଶଯ୍ୟାମାତ୍ର । ଏ ବାଲି ତ ତା'ର ନୁହେଁ, ସମୁଦ୍ରର । ସେ ଗ୍ରାସକରୁ, ସେଥିରେ କିଛି କହିବାର ନାହିଁ ତାର । ସିପ୍ରାର ଉନ୍ନତ ବକ୍ଷ, ଅନାବୃତ ଅଥଚ ବିସ୍ଫାରିତ ଚକ୍ଷୁ, ବିଷ୍ଫୁରିତ, ପ୍ରଲମ୍ବିତ ମାଂସଳ ତନୁର ସମସ୍ତ କୋମଳତା ତାର ଲିପ୍ସି-ହତ କଠୋର ମନକୁ ଅତି ବ୍ୟସ୍ତ, ଅତି ତୀବ୍ର କରିପକାଏ । ଲିପ୍ସି ଗଲାବେଳେ ତାକୁ ଏହିଭଳି ଗୋଟିଏ ମୁହୂର୍ତ୍ତି ଗୃହିଁଥିଲା ଅଥଚ ଶତଧା ବିଦୀର୍ଣ୍ଣ ହୃଦୟ ତାର ପିପାସାକୁ ମେଣ୍ଟାଇ ପାରିବ ନାହିଁ ବୋଲି ରୁଦ୍ରମନା କରି କରି ମଧ୍ୟ ମନା

କରି ପାରୁନଥିଲି । ଲିପି ତାଙ୍କୁ ଗଲାବେଳେ ସାଙ୍ଗରେ ନେଇ ଯାଇ ପାରିଥିଲା ବୋଲି ସେ ଅନୁଭବ କରିପାରିଥିଲା ।

ସିପ୍ରା ତାର ଅନନ୍ତ ପିପାସା ମେଣ୍ଟାଇବା ଲାଗି ରୁଦ୍ରବାବୁଙ୍କ କୋଡ଼ରେ ଶୋଇବାକୁ ଗଲାବେଳେ, ମୁଁ ଯାଇ ଦୁଆର ଫିଟେଇ-ଥିଲି । ପଶୁ ପଶୁ ଫେରି ଅସିଥିଲି ସତ, ଘରକୁ କମିତ ଫେରିଲି, ଅନ୍ତତଃ ପନ୍ଦର କୋଡ଼ିଏ ମିନିଟ କାଳ ଭାବିପାରି ନଥିଲି ।

ତା' ଆରଦିନ ସିପ୍ରା ଅଧାପୋଡ଼ା ସିଗାରେଟ ନ ଆଣି ଧରିଆସିଥିଲା ଗୋଟାଏ ନଚ୍ଚକ୍ୟାଶେଲ୍ 'ସିଗାରେଟ' ଡବା । ହାତରେ ଉଡ଼ାଉଥିଲି । ମୁହଁରେ ସିଗାରେଟ ଖଣ୍ଡିଏ ଲଗେଇ, ଦ'ଗୁଣ୍ଡପୁଳା ସିଗାରେଟ୍ ଧୂଆଁ ଶୋଷଡ଼ ମତେ ଦମ୍ଭର ସହିତ କହିଲା, କାଲେ ଟୋକା, ତତେ ଭାରି ଲାଜମାଡ଼ିଲା, ନା ? ବସି ଥାଆନ୍ତୁ, ଦେଖି ଥାଆନ୍ତୁ ! କ'ଣ କରୁଛ ସଂସାର ଭାସି ଯାଇ ଥାଆନ୍ତା । ଦେଖିଲ୍ ତ ଭଲକରି ଦେଖିଥାଆନ୍ତୁ । ମୁଁ ତ ତୋଭଳି କାନ୍ଥରେ କଣା କରି ରୁଦ୍ରବାବୁଙ୍କୁ ଦେଖେନି । ମୁଁ ଦେଖିବାଭଳି ଦେଖେ । ଶୁଣିବାଭଳି ଶୁଣେ ।

ମୁଁ ଦେଖିଲି, ସତକୁ ସତ କାନ୍ଥରେ ଗୋଟାଏ କଣା ଅଛି ସିପ୍ରା ବୋଧହୁଏ ଏଇ ବାଟେ, ମୁଁ ନଥିଲାବେଳେ ରୁଦ୍ରବାବୁଙ୍କ ସମସ୍ତ ଖବର ଅନ୍ତର ରଖେ ।

ସିପ୍ରା ତା'ଆରଦିନ ଅସି ସେଇ କଣାଟିକୁ ବହୁତ ଖୋଜେ ପାଏନା । କାନ୍ଥର କେଉଁଠି ସେ କଣାଟି ଥିଲା, ସେତକ ମଧ୍ୟ ଜାଣିବା ତା ପକ୍ଷରେ କଷ୍ଟକର ହୋଇ ପଡ଼େ ।

ସେଦିନଠୁ ସିପ୍ରା ସହିତ ମୋର ଆଉ ଏଇ ଘରେ ଦେଖା ସାକ୍ଷାତ ହୁଏନା, ଯାହାହୁଏ କ୍ଳାସରେ । ସିପ୍ରା ମତେ କଥା କହେନା । ସେଇ କଣାଟି ଲାଗି ଯେ ସେ ଆମ ଘରକୁ ଆସୁଥିଲା, ସେତକ ମୁଁ ଜାଣିପାରି ନୀରବ ରହେ । ସିପ୍ରା ମୋ ବନ୍ଧୁଙ୍କରେ ନାନା କଥା ରଟାଏ । ଅପପ୍ରଚାର କରିବାରେ ତା ମୁହଁରେ ବାଡ଼ବତା ରହେ । । ତା' ପରିବାରକୁ ମୋ ସାଙ୍ଗପିଲାଏ

ଭଲ ଭାବରେ ଜାଣନ୍ତି ବୋଲି ତା'କଥାକୁ କେହି ବିଶ୍ୱାସ କରନ୍ତି ନି । ସେ ଯାହା ଯାହା ମୋ ବିରୁଦ୍ଧରେ କହେ, ସବୁଗୁଡ଼ିକ ତାରି ଜୀବନର କାହାଣୀ ବୋଲି ସେମାନେ ଧରିନିଅନ୍ତି ।

ତୁମେ ଯେଉଁଦିନୁ ମୋ ପଛେ ପଛେ ଲାଗିଲ, ତାର ପନ୍ଦରଦିନ ପୂର୍ବରୁ ସିପ୍ରା ବାହା ହୋଇଥିଲା, ଆମ କଲେଜର ଜଣେ ପ୍ରଫେସରଙ୍କୁ । ପ୍ରଫେସର ଜଣଙ୍କ ଭାରି ନିରୀହ । ଅତି ସରଳ । ସିପ୍ରା ତାଙ୍କ ଚକ୍ଷୁରେ ଜଣେ ଗୁଣବତୀମାନ । ତାଙ୍କୁ ଇମିତ ପାଇବାରେ ପଡ଼ିଲା ଯେ ତାକୁ ବାହା ନହେବାକୁ ତାଙ୍କର ଗୃହ ନ ଥିଲା ।

ବାହାହେବାର ଚାରିଦିନ ପରେ ପ୍ରଫେସର ଜଣକ ହଠାତ୍ ଆମ ଘରକୁ ଆସି ମାମୁଁଙ୍କୁ ପଚାରିଥିଲେ, ଏଠି ରୁଦ୍ରଚରଣ ସାମଲ କିଏ ଥାଆନ୍ତି ? ମାମୁଁ ଚଷମାକୁ ଟେକି ବିସ୍ମିତ ଭାବରେ କହିଲେ, କିଏ ? ରୁଦ୍ର ? ସିମିତ ତ କେହି ଏଠି ନାହାନ୍ତି । ଏଠି କେବଳ ତିନିଜଣ ରୁହନ୍ତି, ଜଣେ ମୋ ସ୍ତ୍ରୀ, ଅନ୍ୟ ଜଣେ ଭାଗ୍ନେୟୀ ମୃଣ୍ମୟୀ ।

ପ୍ରଫେସର ଜଣକ ଆମ ପାଠ୍ୟ ସହିତ ସମ୍ପୃକ୍ତ ନ ଥିଲେ ମଧ୍ୟ ମୁଁ ତାଙ୍କୁ ଚିହ୍ନେ । ତେଣୁ ନିଜକୁ ଅନ୍ତରାଳରେ ବେଶୀ ସମୟ ଲୁଚି ନ ପାରି ମାମୁଁଙ୍କ ପାଖରେ ଆସି ଠିଆ ହୋଇ କହିଲି, ମାମୁଁ ଇଏ ଆମ କଲେଜର ବଟାନି ପ୍ରଫେସର ରଞ୍ଜନବାବୁ ।

ମାମୁଁ ତାପରେ ତାଙ୍କୁ ବସିବାକୁ କହିଲେ, ମତେ କଫି କରି ଆଣିବାକୁ ବରାଦ ଦେଲେ । ତାପରେ ନାନା କଥାବାର୍ତ୍ତା ହେଲା ।

ରୁଦ୍ରବାବୁହେବକା ଆମର ଘରଭଡ଼ା ନେଇଥିଲେ ମଧ୍ୟ ମାମୁଁ ରୁଦ୍ରବାବୁଙ୍କୁ ଜାଣିବାର କୌଣସି ଅବକାଶ ନଥିଲା । ଘରଭଡ଼ା ଦେଇଥିଲେ ବିଦ୍ୟାଧର ସାମଲଙ୍କ ନାଁରେ । ବିଦ୍ୟାଧରବାବୁ ମାସକୁ ମାସ ଘରଭଡ଼ା ଦେବା ପରିବର୍ତ୍ତେ ବର୍ଷକପାଇଁ ଅଗ୍ରୀମ

ଦେଇଥିଲେ । ରୁଦ୍ରବାବୁ ବା ତାଙ୍କ ପାର୍ଟନରମାନଙ୍କ ମାମୁଁଙ୍କ ଅସି ଘରଭଡ଼ା ଦେବାକୁ ପଡ଼ୁନଥିଲା । ତେଣୁ ମାମୁଁଙ୍କର ରୁଦ୍ରବାବୁଙ୍କ ଶଙ୍କିବାର ଉପାୟ ନଥିଲା । ମୁଁ ମଧ୍ୟ ଏ ବାବୁଙ୍କ ସହିତ ସିପ୍ରାର ବିବାହ ହୋଇଯାଇଛି ବୋଲି ସେତେବେଳଯାଏ ଜାଣି ନଥିଲି । ମାମୁଁଙ୍କ ପକ୍ଷରୁ ମୁଁ ରଜନବାବୁଙ୍କୁ କହିଥିଲି, ରୁଦ୍ରବାବୁ ଆମ ଘରର କେହି ନୁହଁନ୍ତି, ଆମର ଭଡ଼ାଟିଆ । ଦାଣ୍ଡ ସାମନାରେ ତାଙ୍କ ଅଫିସ । ସେଠି କ'ଣ କେଜାଣି ବ୍ୟବସାୟ କରନ୍ତି ।

ମୁଁ ଏତେବିଷୟ ଜାଣେ ଅଥଚ ମାମୁଁ ଜାଣନ୍ତିନି—ମାମୁଁ ତେଣୁ ମତେ ପଚାରିଥିଲେ, ତୁ ଏସବୁ କିମିତି ଜାଣିଲୁ ?

—ସିପ୍ରାଠୁ ।

ପ୍ରଫେସରବାବୁ ହଠାତ୍ କହିଉଠିଲେ, ସିପ୍ରା ମୋ ସ୍ତ୍ରୀ ।

ତା ପରେ ଯାଇ ଜାଣିଲି ଯେ ସିପ୍ରାର ଇଏ ସ୍ୱାମୀ । ପ୍ରଫେସର ଅସିଥିଲେ ରୁଦ୍ରବାବୁଙ୍କୁ ନିମନ୍ତ୍ରଣ କରିବାପାଇଁ—ଏକ ଗୃହଭୋଜିରେ । ସିପ୍ରା ଯିମିତି ଫଡ଼ଫଡ଼ି, ନିଶ୍ଚୟ ରୁଦ୍ରବାବୁଙ୍କ କଥା କହିଥିବ । ସିପ୍ରାର ବନ୍ଧୁଭାବରେ ପ୍ରଫେସର ହୁଏତ ରୁଦ୍ରବାବୁଙ୍କୁ ଗୃହ ଜଳଖିଆ ଦେଇ ଆପ୍ୟାୟିତ କରିବେ ।

ରୁଦ୍ରବାବୁଙ୍କ ବାବଦରେ ଜୁଆଡ଼େ ସେ ନାନାକଥା ପଚାରିଲେ । ସିପ୍ରାଙ୍କ ସହିତ ତାଙ୍କର କିଭଳି ସମ୍ପର୍କ ହେଲା, କେବେ କେଉଁଠି ଦେଖାହେଲା, ସବୁକଥା ଖୋଳିତାଡ଼ି ପଚାରିଥିଲେ । ଲଣ୍ଡନଫେରନ୍ତା ପ୍ରୋବଷ୍ଟେଲ ଏଜେଣ୍ଟ ରୁଦ୍ରବାବୁ ସବୁ ସତ ସତ କହିବା ଉଚିତ ବୋଲି ଭାବି ଯାହାଁ ଯାହା ଘଟିଥିଲା ସବୁ କହିଗଲେ । ଆଜି କାଲିର ପ୍ରଫେସର ରଜନବାବୁ ଏଗୁଡ଼ାକ ଜୀବନରେ ସାଧାରଣତଃ ଘଟେ, କିଛି ନୁହେଁ ବୋଲି କହି କହି ସବୁ ଶୁଣିଗଲେ । ମୁଁ ଦୁଆରଫାଟରେ ଦେଖିଥିବା ଘଟଣାଟା ମଧ୍ୟ ସେ ଲୁଚେଇ ରଖି ପାରିଲେ ନାହିଁ—ଫିଟେଇ ଦେଇଥିଲେ ।

ବହୁଦିନ ପରେ, ଅଟରେ ତୁଟମ ଡ...କହୁଥିଲି, ରୁଦ୍ରବାବୁ କୁଆଡ଼େ ଭଜନବାବୁଙ୍କ ଘରେ ଗୃହା ନଖାଇ ଜୋତାମାଡ଼ ଖାଇ ଫେରିଲେ। ସିଗ୍ଧା କୁଅଡ଼େ ଏ ଜୋତାମାଡ଼ ପରେ, ଭଜନବାବୁଙ୍କର ଆଜ ଜୋତାହଲକ କ'ଣ ହେବ, ରୁଦ୍ରବାବୁ ତୁଟମ ପିଛପଅ କହି ପଛେ ପଛେ ଗୋଡ଼େଇଥିଲି ।

ରୁଦ୍ରବାବୁ ଦେହର ମାଡ଼ଖିଆ ଅଂଶଠାକୁ ଆଉଁସି ଆଉଁସି ଫେରି ଅସିଥିଲେ ।

ଦେଖିଲି, କୁଳଠୁ ଅସି ମୁଁ କୁଳଠି ପହଞ୍ଚିଲେଣି । ଠିକଏ ମନେ ପକେଇ ଦଉନ । ଖୁଣ୍ଟଠା ଭଳି ବସିଚ କ'ଣମ ? ଅଜ ଗୁଡ଼ାଏ କ'ଣ ଯଦ କହୁ କହୁ କହିପକାଏ, ତାହାହେଲେ ମୋର ଅଜ ଥଳକୂଳ ରଖିବନ ।

...ହଁ ଗ୍ରାମସେବକା ପର, କାହିଁକ ହେଇଥାଅନ୍ତି କହିବା କଥା ! ମାଇଁ ମଲେ, ମାମୁଁ ବ ମଲେ-ତା'ପରେ ମୋର ଘର ବାହୁଡ଼ା—ସେଉବେଳକୁ ଘରେ ମା ମୋର ମାଇଁଙ୍କ ବଡ଼ିପିଲା ଭଳି ପଲେ ଚୁଆପିଲା ଜନମ କର ବସିଥାଏ । ବୋଧହୁଏ ପୁଅଟିଏଁ ଜନ୍ମ ହେବପର ଆଶା ରଖି ରଖି ମା ମୋର ଜନ୍ମନିରୋଧ ପ୍ରଚାରକୁ କାନରେ ଶୁଣି ନଶୁଣିଲା ଭଳି କାରବାର କରୁଥିଲା । ହଁ ପୁଅ ଜନ୍ମହେଲା ସତ ଛଅଟି ଝିଅ ତଳକୁ । ଏତେ ପିଲାପିଲାଙ୍କୁ ପୋଷିବା ବାପାଙ୍କ ପକ୍ଷରେ କଷ୍ଟସାଧ୍ୟ ହୋଇ ଉଠିଲା । ମୁଁ ନିଜ ଅଖିରେ ବାପମାଆଙ୍କ କଷ୍ଟ ଦେଖି ସମ୍ଭାଳି ନପାରି ଥରେ ଥରେ ଭାବେ, ପାଠ ତ ପଢ଼ିଚି, ଚାକିରି କରି ବାପ ମା'ଙ୍କୁ ପୋଷିବ ।

ଅମ ସାହିରେ ମୋର ସାଙ୍ଗଥିଲା, ଶର୍ମିଷ୍ଠା ଦାସ—ଗ୍ରାମସେବକା । ଦରମା ଶହେ । ତା ଛଡ଼ା ଉପରି ରୋଜଗାର ବ ଥିଲା ।

କେତେଯାଏଁ ପଢ଼ିଛେ ଗ୍ରାମସେବକ୍ ହୁଅନ୍ତ, ମୁଁ ଅଇ. ଏ ପର୍ଯ୍ୟନ୍ତ ସୁଦ୍ଧା ଜାଣିପାରି ନଥିଲି । ସେଥିଲାଗି ମୋ ପରୀକ୍ଷା ଫଳ ନାଁ ଅଗରେ ଖବର କାଗଜବାଲାମାନେ ଲେଖୁଥିଲେ, ଶ୍ରୀମତୀ ମୂର୍ଚ୍ଛନା ମହାପାତ୍ର ସା.ଜ୍ଞା.ବ୍ୟ. ଅର୍ଥାତ୍ "ସାଧାରଣ ଜ୍ଞାନ ବ୍ୟତୀତ" ।

ଶର୍ମିଷ୍ଠା ଦାସର ରୋଜଗାର, ତା'ର ଗୃହଚଳଣିକୁ ଦେଖିଲେ ମୋର କାହିଁକି କେଜାଣି ଭାରି ଈର୍ଷାହୁଏ । ଶର୍ମିଷ୍ଠା ଦାସର ପରିବାରଟି ଠିକ୍ ମୋ ପରିବାର ପରି । ଦରମା ପାଏ ଶହେ । ଶହେଟିଯାକ ଟଙ୍କା ଘରକୁ ପଠାଇଦିଏ । ଉପରି ଯାହା ମିଳେ, ସେଥିରେ ସେ ଚେହେରା ବନାଏଁ—ଅର୍ଥାତ୍ ହାଇହିଲ୍ ଯୋତା ପିନ୍ଧେ, ଓଠରେ ଲିପଷ୍ଟିକ ବୋଳେ, ନାଇଲନ ଶାଢ଼ୀ ପିନ୍ଧେ, ଟ୍ରାନ୍‌ଜିଷ୍ଟର ରେଡ଼ିଓ ବଜାଏ, ସ୍ପଞ୍ଜ ଦେଇ ଗ୍ଲାଡକୁ ଉଚା ଉଚା କରେ । ଶୀତଦିନେ ଭିତରେ ଗୋଟାଏ ଲମ୍ବା ଫୁଲ୍ ସ୍ୱେଟର, ତା ଉପରେ ଗୋଟାଏ କୋର୍ଟ ପିନ୍ଧି ଦେହକୁ ମୋଟାସୋଟା କରେ । ବି. ଡ଼ି. ଓ .ଙ୍କ ଜିପ୍‌କୁ ମଧ୍ୟ ଦରକାର ବେଳେ ବି. ଡ଼ି. ଓ. ଙ୍କ ପାଖରେ ବସେଇ ରାତିଅଧରେ ଜଙ୍ଗଲକୁ ଶିକାର କରିବା ଉଦ୍ଦେଶ୍ୟରେ ଡ୍ରାଇଭିଂ କରିନିଏ ।

ମୋର ଇଚ୍ଛାହୁଏ ସିମିତି ହେବାକୁ ।

—ଦାସେ ଟିକିଏ ହସିଦେଲେ ।

ସୁସ୍ମିତାଦେବୀ କହିଲେ, ହସିବା ଯଦି କହିବନି । ପରୀକ୍ଷୁଛ, ଥଟ୍ଟାକରୁଛ, ପୁଣି ହସୁଛ ? ଛୁ, ତୁମର ଯା କଥା ନା !

ହଉ—ତା ପରେ ?

ତା ପରେ ଦିନେ ଶର୍ମିଷ୍ଠାଠୁ ବୁଝିଲି, ଏ ଗୃହକାର୍ଯ୍ୟ କରିବାକୁ ହେଲେ କ'ଣ ଦରକାର ।

ଶର୍ମିଷ୍ଠା କହିଲା, ଶିକ୍ଷା ମାଇନର ପାସ, ଦୀକ୍ଷା—ହାକିମଙ୍କ ମନନେଇ ଚଳିବା; କର୍ତ୍ତବ୍ୟ—ଯାହା ଧର୍ତ୍ତବ୍ୟ ନୁହେଁ ତାକୁ ଗ୍ଲାଡ଼କ ଫୁଲେଇ ସହିଯିବା, ନିଜ କାମରେ ଅବହେଳା କରି

ସରକାରଙ୍କୁ ଠକିବା—ପାଉଡରର ଦୁଧ ବଣ୍ଟନବେଳେ ହଜାରେ ଜାଗାରେ ଶହେ ବାଣ୍ଟି, ନଅଶହ ଉଡ଼ିବା ତୁମ ସୁବିଧା ଦେଖି କୌଣସି ମାରୁଆଡ଼ିଙ୍କ ବିକିବା । ଧରା ଯିମିତ ନପଡ଼ିବ, ସେଇଥି-ଲାଗି ଉପର ହାକିମଙ୍କ ଘରେ ତନ୍ନ ଗୃରୋଟି ଉଡ଼ିବା ଦେଇଦେବା ଏବଂ ତାଙ୍କ ପିଲାପିଲିଙ୍କୁ ଆଦର କରିବା ନଚେତ ତାଙ୍କ ସ୍ତ୍ରୀଙ୍କୁ ବଡ଼ ଭଉଣୀଠୁଁ ବଳି ଭକ୍ତି କରିବା । ଦରକାର ପଡ଼ିଲେ ତାଙ୍କ ଘରେ ତାଙ୍କ ସ୍ତ୍ରୀଙ୍କ ସହିତ ରୋଷେଇ କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କରିବା ।

ଏସବୁ ଗୁଣ ମଧ୍ୟରୁ କୌଣସି ଗୋଟିଏ ଗୁଣ ମୋଠି ନାହିଁ ବୋଲି ଅନୁଭବ କରିପାରି ଥିଲି ମୁଁ । ତେଣୁ ଗ୍ରାମସେବିକା ହେବା ପ୍ରସ୍ତାବଟା ବାପାଙ୍କ ପାଖରେ ପକେଇବି ବୋଲି ଯାହା ଆଗରୁ ଭାବିଥିଲି, ନ ପକେଇ ଭାବିଲି, ତୁମ ପାଖରେ ସ୍ତ୍ରୀ ଭାବରେ ସ୍ଥାୟୀ ଗୃହସ୍ତି କରିବାଟା ଭଲ । ତୁମ ଅଧୀନ ଗୃହସ୍ଥିଟାରେ ଦରମା କମ୍ ଏବଂ ସେଥିରେ ବାପ ମାଙ୍କୁ ଉପକୃତ କରି ହେବ ନି, ଏ କଥା ଜାଣିପାରି ଥିଲେ ମଧ୍ୟ ତୁମ ଭଳି ଜୋଇଁ ପାଇ ବଡ଼ ଲୋକର ଶ୍ୱଶୁର ମୁଁ ବୋଲି ବାପା ଅମର ଯେଉଁ ଦାମିକା ଆଶ୍ୱାସନା ଆଜୀବନ ପାଇବେ, ସେତକ ମାସିକ ହଜାରେ ଟଙ୍କା ସାହାଯ୍ୟଠୁଁ ବଳି ତାଙ୍କୁ ଅଧିକ ଉପକୃତ କରିବ ବୋଲି ଭାବି ପାରିଥିଲି—

ବୁଝିଲ ? ଗ୍ରାମସେବିକା ନ ହେଇ ଏଇଥି ପାଇଁ ତୁମର ଚରଣ ସେବିକା ହେବି ବୋଲି ଭାବିଥିଲି ସିନା ଶେଷରେ ତୁମର ଶୁଷ୍କତନୁ କ୍ଷୀଣ ମୁଖକୁ ଦେଖି ମନେ ମନେ ମୁଁ ଏ ପର୍ଯ୍ୟନ୍ତ ଭାବି ଆସିଛି ମୁଁ ତମର ଗ୍ରାମସେବିକା ।

ଇଏତ ଗଲ୍ପ ସୁସ୍ମିତାଦେବୀଙ୍କ ଗ୍ରାମସେବିକା [ଅଧ୍ୟାୟ । ଦୀନବନ୍ଧୁ ଦାସେ କେଉଁ ଜିଦ୍‌ରେ ସୁସ୍ମିତାଦେବୀଙ୍କୁ ବରଣ କଲେ ସେ କୁଆଡ଼େ ଭାରି ରହସ୍ୟମୟ । ଅତି ଗୁପ୍ତ, ତଥାପି କହୁଛି, ଜୀବନରେ କାହାକୁ କହିନାହିଁ ବୋଲି କହି ତାଙ୍କର ସମସ୍ତ ଅନ୍ତରଙ୍ଗ ନିସ୍ତରଙ୍ଗ ବନ୍ଧୁମାନଙ୍କୁ କହିଥାଆନ୍ତି । ସେ ଏସବୁ କହିଲାବେଳେ ଆଗରୁ କହିଦେଇ ଥାଆନ୍ତି ଯେ ଭାଇ ନ କହିଲେ ଘଟଣାଗୁଡ଼ାକ ନାହି ପାଖରେ ଫକ ଫକ ହେଇ ଉଠେ, ପେଟରେ ବାୟୁ ଗୋଳେଇ ପୋଳେଇ ହେଲାଭଳି ହୁଏ, ତେଣୁ କହି ପକାଉଛି । ପ୍ରଥମେ ମୁହଁକୁ କାନ ପାଖରେ ଲଗେଇ ବହୁଲୋକ ଥିଲେ, ତୁ ଟିକିଏ ଇଆଡ଼କୁ ଆ କହିବ ବୋଲି କହି ବନ୍ଧୁଙ୍କୁ ଡାକି ନିଅନ୍ତି । ଦି ଚାରିପଦ କହନ୍ତି କି ନା ପାଖରେ ଥିବା ଲୋକେ କହନ୍ତି, ଏଇ ଫୁସ୍ ଫୁସ୍ ଗୁଣି ତ ଗଲାନି, କହୋ କହିବତ ବଡ଼ ପାଟିରେ କହିବ । ଦୀନବନ୍ଧୁଠି ଆଉ ତ କିଛି ନ ଥାଏ, ଥିଲେ ଥିବ, ସେଇ ଠୋକା କଥାଗୁଡ଼େ, ସେୟା କହୁଥିବ । ଦୀନବନ୍ଧୁ ଦାସେ ସେଇଠୁ ଆରମ୍ଭ କରନ୍ତି ବଡ଼ ପାଟିରେ । ଅଫିସ ହେଉଥିଲେ, କର୍ମଚାରୀମାନେ କଲମ ବନ୍ଦ ଧର୍ମଘଟ କରନ୍ତି, ପରବା କଣା ହେଉଥିଲେ, ସମସ୍ତଙ୍କ ପରବା କଣା ବନ୍ଦ ହୁଏ । ଡାକ୍ତରଖାନା ହେଉଥିଲେ, ରୋଗୀଗୁଡ଼ାକ ଠିଆ ହୋଇ ରହନ୍ତି—ଦୀନବନ୍ଧୁ ଦାସଙ୍କ କଥା ସରେନାଁ । ଗୁଡ଼ିର ସୂତା ଲମ୍ବିଲା ଭଳି ଲମ୍ବିଥାଏ—ମାଂଜିଆ ବୋଲା ସୂତାଭଳି ସେ କଥାଗୁଡ଼ା ଭାରି ଟାଣ କିନ୍ତୁ ସରସ ।

ଇମିତି କଥାର ଜୋରରେ ସେ କେତେ ଯେ ଝିଅଙ୍କୁ ଟାଣି ଆଣି ପାରୁଥିଲେ, ତା ସେଇ ଜାଣନ୍ତି । ତାଙ୍କର ଫ୍ରେଣ୍ଡସ୍ କମ୍ପାନୀ

ଲମିଟେଡ଼ର ବନ୍ଧୁମାନେ ଜାଣନ୍ତି । ଏଇତ ସେଦିନ ଉପରବେଳା ଗୃହଟାବେଳେ ଶ୍ୟାମଳ ଡାକ୍ତରଙ୍କ ସ୍ତ୍ରୀ ନନ୍ଦିତା ତାଙ୍କ ଘରକୁ ଆସିଥିଲେ । ସୁସ୍ମିତାଦେବୀ ତାଙ୍କଠୁ ବୟସରେ ବଡ଼ କିନ୍ତୁ ତାଙ୍କ ସ୍ୱାମୀଙ୍କୁ ସେ ବଡ଼ଭାଇ ରୂପେ ଭକ୍ତି କରନ୍ତି ବୋଲି, ତାଙ୍କୁ ଡାକୁଥିଲେ ଭାଉଜ ! ସୁସ୍ମିତାଦେବୀ ଏ ଘରକୁ ଆସିବା ଦିନଠୁ ଭାଉଜ ଭାଉଜ ହୋଇ ହୋଇ ମରି ଯାଉଥିଲେ । ଆଜ ଦୀନବନ୍ଧୁ ଦାସେ ସେ କଥା କହେ। ପଚାରି ପଚାରି ସଠିକ ଖବର ପାଇପାରୁ ନ ଥିଲେ । ପଚାରିଲେ ମାନେ ସୁସ୍ମିତାଦେବୀ କହୁଥିଲେ, ନନ୍ଦିତା ଭାଉଜ ମ । ତାଙ୍କ ଝିଅଟି ଦେଖିବାକୁ ଭାରି ସୁନ୍ଦର ! ଜନ୍ମହେଲା ବେଳକୁ ଓଜନ କେତେ ଥିଲା ଜାଣ ? ଆଠ ପାଉଣ୍ଡ । ଯୋ ଗୋଲଗାଲ ହୋଇଚି ନାଁ, ଗୃବେଇ ପକେଇବାକୁ ଇଚ୍ଛା ହେଉଚି । ମୁହଁଟି ଠିକ୍ ଭାଉଜଙ୍କ ଭଳି । ଦାଦାଙ୍କ ଭଳି ହୋଇ-ଥିଲେ ବଡ ଅସୁନ୍ଦର ଦେଖାଯାଇ ଥାଆନ୍ତା । ଗୀତ ଗାଇଲେ ବଜ ଝଟକୁଟ ଦେ, କଚଲେଟ ଦେ (ଚକଲେଟକୁ ସେ କହେ କଚଲେଟ) । ଆହେ, ଶୁଣିଲେ ଆଶ୍ଚର୍ଯ୍ୟ ହବ, ଏଡ଼କଟିଏ ବୋଲି ପିଲା, ବୋଉ ଆଗରେ ମୂତ ବସିବାକୁ ବି ଲାଜ । ରାତି ଦିନ ପେଣ୍ଟି ପିନ୍ଧିବ, ମୂତ ଦେଖେଇଲେ ବାଥ୍ ରୁମରେ ଯାଇ ମୁତିବ । ହସିଲେ ଗାଲର ଗୋଟିଏ ପାଖରେ ଛୋଟ ଗାତଟିଏ ହୋଇଯାଏ । ଠିକ୍ ଏ ଟେମ୍ପିବୋଲି ତାର ଗୁହାଣିଟି ବଡ଼ ସୁନ୍ଦର ।

ଦାସେ ପଚାରନ୍ତି—ପିଲାଟିର ବୟସ ?

—ଦି ବର୍ଷ ମ । ନାନା ବୋଲି ଡାକଦେବା ମାତ୍ରେ ଲୁଅଡ଼େ ଥିବ ଗୁଡ଼ୁରୁ ଗୁଡ଼ୁରୁ ହୋଇ ଧାଇଁ ପଳେଇ ଆସିବ । କହିବ, ମାଚ (ମାଉସୀଙ୍କ ମାଚ) ଅସାଡ଼ (ଅଚାରକୁ ଅସାଡ଼) । କ'ଣ କରିବ, ଗଲେ ସେଇ ଅସାଡ଼ ଅସାଡ଼ ହବ ବୋଲି ବେଗ୍ ଭିତରେ ପୁଡ଼ିଆଟିକରେ ଖଣ୍ଡିଏ ଆମ୍ବ ଆଚାର ଭର୍ତ୍ତି କରି ନେଇ ଥାଏ । ଭାଉଜ ପେଟ ଖରାପ ହେବ, ତା ଅଭ୍ୟାସ ଖରାପ ବୋଲି ବହୁତ କହନ୍ତି, ମୁଁ କିନ୍ତୁ ନ ନେଇ ରହିପାରେନା । ଏତକ କହୁ

କହୁ ସିଅଡ଼େ ତାହା ଭେକରରେ ଗୃହା ଜନ୍ତୁର ପଡ଼ିବାର ଶବ୍ଦ ହୁଏ, ସୁସ୍ମିତାଦେବୀ ଲସର ପସର ହୋଇ ଧାଇଁ ଯାଆନ୍ତି ରୋଷେଇ ଘର ଭିତରକୁ ।

ଦାସେ ଚୌକିରୁ ଉଠୁ ଉଠୁ ସୁସ୍ମିତାଦେବୀ ପୁଣି ଧାଇଁ ଆସି କହନ୍ତି, ନେଲାକାମାଗୁଡ଼ିକ ତାର ଚୋବାଦନ୍ତକୁ ଭାବ ମାନେ । ପୁଣି ଆଉ ଗୋଟେ ଘର ଭିତରକୁ ଦଉଡ଼ି ଯାଇ ଅଧା ସିଲେଇ ହୋଇଥିବା ପିଲା ଜାମାଟିଏ ଆଣି ଦାସଙ୍କୁ ଦେଖାଇ କହନ୍ତି, ଭାଉଜ କହୁଥିଲେ, କେବେ ତମ ଘରଆଡ଼େ ଯାଇନି, ଆଜି ଚାରଟାବେଳେ ଯିବା । ଜାମାଟା ସିଲେଇ କରି ଦେଇଥିବ, ନେଇ ଆସିବା । ଆହେ, ଦେଖିଲ ଦେଖିଲ ଘଣ୍ଟାରେ କେତେଟା ବାଜିଲାଣି ?

ଦାସେ ଆଲବାମ ଘଡ଼ିଟିକୁ ଦେଖି କହନ୍ତି, ସାଢ଼େ ତିନଟା ।

—ଇଲୋ ମାଆଲୋ, ଆଉ ମୋଟେ ଅଧଘଣ୍ଟେ ରହିଲା । ଭାଉଜ ଯେଉଁଲା ଘଣ୍ଟା କଣ୍ଟାକୁ ଜଗି ବସିଲା ଭଳି ଲୋକନା, ଇଲେ ପଳା ଆସିବେ । ଗୋଟେ କାମ କରବନି, ଟିକିଏ ବଜାରକୁ ଯାଇ ଚାରିଟା ରାଜଭୋଗ, ଆଠ ଦଶଟା ସିଙ୍ଗଡ଼ା, ଆଉ କ'ଣ ମିଳୁଥିଲେ କିଛିଟା ଆଣିଦେବ ।

ଦାସେ କହନ୍ତି, ମୋଟି ପଇସା ତ ନାହିଁ ।

ପଇସା ନାହିଁ ବୋଲି ଶୁଣିଲାମାତ୍ରେ, ସୁସ୍ମିତା ଦେବୀ ଥରହର ହୋଇ ପଡ଼ନ୍ତି । କାରଣ ପଇସା ନ ଥିଲେ, ଦାସେ ପାଗଳ । କ'ଣ ନା କ'ଣ କହିପିବେ, ତାର କିଛି ଇୟତ୍ତା ରହେନି । ଦାସେ ଆରମ୍ଭ କରନ୍ତି, ଦାମ୍ପତ୍ୟ ପୁସ୍ତକରୁ । ଘରେ ଏକ-ମାତ୍ର ରୋଜଗାର କରବା ଲୋକ । ମାସକୁ ତିନି ଶହ ଦରମା, ତା'ଛଡ଼ା ଇଆଡ଼ୁ ସିଆଡ଼ୁ ମାସକୁ ହାରାହାରି ଦେଢ଼ଶହ । ସବୁ ଯାଉଚ କୁଆଡ଼େ ? କ'ଣ ସବୁ ଖିଆପିଆରେ ସରଯାଉଚ ? ଯଦି ବା ଖାଉଚନ୍ତି, ମୋଟାସୋଟା ନ ହୋଇ ଏତେ ପତଳା କାହିଁକି ?

ସୁଷମ ଖାଦ୍ୟ ବୋଲି ସ୍ୱାସ୍ଥ୍ୟରକ୍ଷା ବହିରେ ପିଲାଦିନୁ ସେ ଯାହା ପଢ଼ିଥିଲେ, ଦୈନିକ ତ ସେୟା ସେ ଖାଉଚନ୍ତି— । ଦୈନିକ ଖାଦ୍ୟ-ରୁଟିନକୁ ଦେଖିଲେ । (ରୁଟିନଟା ସ୍କୁଲ ପିଲାଙ୍କ ରୁଟିନ ଭଳି ଏକ ମୋଟା କାଗଜରେ ଲେଖାହୋଇ ଟେବୁଲ ଗ୍ଲାସ ତଳେ ରଖା ହୋଇ ରହିଥାଏ—ଟେବୁଲକୁ ଗୃହିଣୀ ମାନେ ଆଖିରେ ଆଗେ ସେଇଟା ପଡ଼ଯାଏ)—ସକାଳୁ ଦ'ଖଣ୍ଡ ଘିଅ-ଲିଅରେ ଭଜା ପରଟା, ଦଇଟା ପାଚିଲାପୁରୁ କଦଳୀ, ଦୁଇଟାଅଣ୍ଡାର ଅମଲେଟ, ଖଣ୍ଡେ ବ୍ରେଡପିଠା, ଗୋଟିଏ କମଳା ଓ କପେ·ଓଭାଲଟିନ୍ ନଚେତ୍ କୋକୋ । ସେହିଭଳି ମଧ୍ୟାହ୍ନଭୋଜନରେ ସବୁ ପରିବା ସିଝାରୁ ମେଣ୍ଟାଏ, ଖଣ୍ଡେ ଶାଗଖରଡ଼ା, କିଛିଟା କଲିଜା ଭଜା, ଖାଇସାରିବା ପରେ କପେ କଫି । ପେନ୍ସିଲରେ ଚିହ୍ନ ଦେଇ ମନେ ମନେ କହି ହୁଅନ୍ତି ଭିଟାମିନ ଏ· ବି· ସି· ଡ଼ି· ସବୁ ଅଛି । କି'ଣ ଏଇ ଭିଟାମିନ୍ ସଂଗ୍ରହ ଲାଗି ଏତେ ଖର୍ଚ୍ଚ ? ଅତି ବେଶୀ ହେଲେ ମାସକୁ ଶହେ । ଆଉ ଗୁଡ଼ାକ ? ପଇସା ଅଭାବରେ ହାତରେ ଘଣ୍ଟି ନାହିଁ, ଦେହକୁ ସୁଟ୍ ନାହିଁ ଯେ ଶୀତଦିନେ ସଂଧ୍ୟା ହେଲେ ଘରକୁ ଧାଇଁ ଆସି ବୁଢ଼ୀର ଘର କଳା ତୁଳା କମ୍ବଳ ଘୋଡ଼େଇ ଶୋଇ ପଡ଼ନ୍ତି । ନିଜର ବୋଲି ପୃଥିବୀଟା ଭିତରେ ଘର ଖଣ୍ଡିଏ ନାହିଁ କି ବାଉଁଶବନରେ ଗୋଟେବୋଲି ଜମି ନାହିଁ । ସମ୍ପତ୍ତି ବୋଲି ହଜାରେ କି ଦ ହଜାର ବହି, ଆଉ ଟେବୁଲ ଚୌକି କେଇଖଣ୍ଡ । ଆଲମିରାଟିଏ ବି ନାହିଁ । ଭଲ କରି ପେଣ୍ଟ ସାର୍ଟ ଦଶଖଣ୍ଡ କରିବାକୁ ମଧ୍ୟ ପଇସା ହେଉନି ।

ତେଣୁ ପଇସା ନାହିଁ କହିଲେ ସୁସ୍ମିତା ଦେବୀ ଘ୍ନଟିପିଟି ହୋଇ କୁଆଡ଼େ ପଳାନ୍ତି । ଏଥର ସେଥର ପିଲି ଯଦି ହେବେ ନା, ଲୋକହସା ହେବାକୁ ପଡ଼ିବ । ଲେଙ୍ଗୁଟି ପିନ୍ଧି ବାବାଜି ହେବାକୁ ଦଉଡ଼ିବେ ।

ସେଥର ଅର୍ଥ ସେଦିନ ଡେକ୍ ଛିଟା ମଜା ହୋଇ ନ ଥିଲା ବୋଲି ଜନାଦେବୀ ଆଗ ଡାଲି, ତା ପରେ ତରକାରୀ

ବସାଇଦେଇ, ଶେଷରେ ଚୁଲିରେ ଭାତ ଗଣ୍ଡାକ ବସେଇ ଦେଇଥିଲେ । ସେଦିନ ସକାଳୁ ରତ୍ନାଦେବୀ ଘରେ ଅଠାନାଇଁ, ଅଜି ଅଠା ଆଣିବ ବୋଲି ଦାସଙ୍କର ମନେ ପକେଇ ଦେଇଥିଲେ । ଦାସେ ପକେଟ ଅଣ୍ଡାଳି ଦେଖିଥିଲେ, ଏକାବେଳକେ ଖାଲି । କଉଡ଼ି ଖେଳର ଫାଉଭଳି, ପକେଟ ତାଙ୍କୁ କହିଥିଲା, ଫାଉ ଅର୍ଥାତ୍ ଫାଙ୍କା । କପର୍ଦ୍ଦକ ଶୂନ୍ୟତାର ରାଗଟା ଦାସଙ୍କ ଭିତରେ ଭିତରେ ଜଳୁଥିଲା । ଘଣ୍ଟାକୁ ଦେଖିଲେ, ଦଶ ବାଜିବାକୁ ପନ୍ଦରମିନିଟ ବାକୀ ଶୀଘ୍ର ବାହାରିବା ସମୟ ହୋଇଗଲା କହି ଦାସେ ଗାଧୋଇ ଗଲେ । ଆସି ଦେଖିଲେ, ରତ୍ନାଦେବୀ ଗୁଞ୍ଜିଲି ଧୋଇ ପକଉଛନ୍ତି । ରାଗ ଯାଇ ହିମାଳୟ ଶୃଙ୍ଗ ଉପରକୁ ଉଠିଗଲା । ପିନ୍ଧିବା ଲୁଗା ପଟା ଫୋପାଡ଼ି ଦେଇ, ଗୋଟାଏ ଲେଙ୍ଗୁଟି ପିନ୍ଧି, ଦେହରେ ପାଉଁଶ ଗୁଡ଼େ ବୋଳି ହୋଇ କହିଲେ ନା, ଅଜି ଚାଲିବନି । ଯାଉଛି ହିମାଳୟକୁ । ଏଣିକି ତପସ୍ୟା କରିବି । ଏ ସଂସାରରେ କେହି କାହାର ନୁହନ୍ତି, ଜୀବନଟା ନଳିନୀ ଦଳଗତ ଜଳମତି ତରଳଂ, ଅର୍ଥହିଁ ଅନର୍ଥର କାରଣ । କହି କହି ଘରର ଏପଟ ସେପଟ ହେଉ ହେଉ ଅଫିସ ପିଅନ ଡାକ ପକେଇଲା, ବାବୁ ଅଛନ୍ତି ?

ଦାସେ ଏଡ଼େ ପାଟିରେ ଉତ୍ତର ଦେଲେ, ହଁ ଅଛୁ । କଣ ?

ଦାସେ ସେଇ ବେଶଭୂଷାରେ ଦୁଆର ଫିଟେଇବାକୁ ଯାଉଥିଲେ । ସୁସ୍ନାତା ଦେବୀ ଦୁଆରଟାକୁ ଠେଲିଧରି କହିଲେ, କହୋ ତମକୁ ଲାଜ ଟିକିଏ ମାଡ଼ୁନି ? ଦେହର ବେଶଭୂଷାକୁ ଦେଖିଲ । ପିଅନ, ସେ ପୁଣି ତୁମର ଅଫିସର ପିଅନ; ଦେଖିଲେ ଲୋକେ କଣ ଭାବିବ, ନିଜ ସାଙ୍ଗମାନଙ୍କୁ କ'ଣ ଯାଇ କହିବ । ଦାସେ ତା'ପରେ ପ୍ରକୃତିସ୍ଥ ହୋଇଥିଲେ । ଭିତରୁ ପାଟିକରି କହିଲେ, ଦୁର୍ଯ୍ୟୋଧନ । ତୁ ଯା, ମୁଁ ଏଇଲାଗେ ଯାଉଛି ।

ଦୁର୍ଯ୍ୟୋଧନ ବାହାରୁ ବାହାରୁ ଚାଲି ଯାଇଥିଲା ।

ଏଇ ସେଇ 'ପଇସା ନାଇଁ' ର ପ୍ରତିକ୍ରିୟା ।

ତେଣୁ 'ପଇସା ନାଇଁ' କହୁ କହୁ ସୁସ୍ମିତା ଦେବୀ ଦଶଟଙ୍କିଆ ନୋଟଟିଏ ବଢ଼େଇ ଦେଇ କହିଲେ, ଏଇ ନିଅ । ବହୁ କଷ୍ଟରେ ପରବା ପଇସାରୁ ବଳେଇ ସାଇତି ରଖି-ଥିଲି । ପିଲାଙ୍କୁ ଭଙ୍ଗେଇ ଯାହା ଯାହା କହିଲି ତା ନେଇଆସିବ । ମୋ ସୁନାଟା ପରା ଟିକିଏ ଜଲଦି ଯାଅ । ଏଇଲେ ତ ଆସିଯିବେ । ଦଶଟଙ୍କିଆ ନୋଟଟି ଦେଖି ଦାସଙ୍କର ଆନନ୍ଦ କହିଲେ ନ ସରେ । ତାଙ୍କ ମନରେ ସାଙ୍ଗେ ସାଙ୍ଗେ ଚାରିଟି ଯାକ ସିନେମା ହାଉସ ଖେଳିଗଲା—ଏପଟେ ଏ ଛବି, ସେପଟେ ସେ ଛବି । ପଇସା ଅଭାବରୁ ଗଲା ମାସେ ଦେଢ଼ମାସ ହେଲା, ପିକ୍‌ଚର ଦେଖା ହୋଇନି । ଦଶଟଙ୍କାରୁ ସୁସ୍ମିତାଦେବୀଙ୍କର ବସ୍ତାଦରେ ଅତି ବଡ଼ ହେଲେ ପାଞ୍ଚ ଟଙ୍କା ଖର୍ଚ୍ଚ ହେବ । ଆଉ ପାଞ୍ଚଟି ରହିବ । ଆଜ ମୀର କହିଛି ସିନେମା ଯିବା । ପଇସା ନଥିଲା ବୋଲି ଅମଙ୍ଗ ହେଉଥିଲେ ସେ । ମୀର, ଦାସଙ୍କ ପାଇଁ ଟିକଟ ଖର୍ଚ୍ଚ ଦେବାପାଇଁ ରାଜି; କିନ୍ତୁ ଦାସେ କାହାରି ଠୁ ଅଧଲେ ଧାର କରି ବିଳାସ କରିବାକୁ ଚାହାନ୍ତି ନାଇଁ ।

ଚୌକୀରୁ ଉଠି ଯାଉ ଯାଉ ପୁଣି ରମାଦେବୀ ଆସି କହିଲେ, ହେଇଟି, ହାତରେ ସେଗୁଡ଼ାକ ଧରି ଭ୍ରୁସ୍‌କିନି ଘର ଭିତରକୁ ପଶି ଆସିବନି ଟି । ଏଇ ଝରକା ମେଲା ଅଛି, ଦାଣ୍ଡଆଡ଼ୁ ଚାହିଁବ, ଯଦି ଭଉଜହେଇବକା ଘରେଥିବେ, ବାଡ଼ିପଟେ ଆସି କବାଟ ଠୁକ୍ ଠୁକ୍ କରିବ, ମୁଁ ଯାଇ ନେଇ ଆସିବି । ଆରେ ହଁ ତ, ଭଉଜ କହିଥିଲେ, ତାଙ୍କ ସାଙ୍ଗରେ ତାଙ୍କ ପାଞ୍ଚ ଛଅଜଣ ପଢ଼ା ସାଙ୍ଗ ବି ଆସିବେ, ଚାରି ପାଞ୍ଚଟି ରାଜଭୋଗ ତ ଆଣିବନି । ଦଶଟଯାକ ଟଙ୍କାରେ ଯାହା ହବ ନେଇ ଆସିବ ।

ଦାସଙ୍କ ହାଲ୍‌କା ଶୁଖିଗଲା । ତାଙ୍କର ମନେହେଲା ସିନେମା ଆରମ୍ଭ ନ ହେଉଣୁ ଯିମିତି ଲାଇଟ ଫେଲ୍ କଲା । ସେ ଅନ୍ଧାର ଘରେ ହଲ୍ ଭିତରେ ବସି ଆଗକୁ ଚାହିଁ ଚାହିଁ କେତେବେଳେ

ହୋଟେଲ୍‌ର ପଡ଼ିଚନ୍ତି । ଲାଇଟ୍ ଲିଭିଗଲା, ସିନେମା ଆରମ୍ଭ ହୋଇଗଲା ଅଥଚ ସେ ଉଠିପାରୁ ନାହାନ୍ତି । ଦୁଇ ଘଣ୍ଟା ବିତିଗଲା — ଫାଷ୍ଟ ସୋ ସିନେମା ଶେଷ । ଗେଟ୍‌କିପର୍ ଆସି କହିଲା, ବାବୁ ଉଠନ୍ତୁ, ସେକେଣ୍ଡ ସୋ ସିନେମା ଆରମ୍ଭ ହେବ ।

ଦାସେ ଚୌକୀରୁ ଉଠିଥିଲେ ଯେତେବେଳେ, ଗଲେ । ହୋଟେଲ୍‌ବାଲାକୁ ଯାହାଯାହା ମାଗିଲେ, ସେ ଦେଇ ସାରିବା ପରେ, ହିସାବ କରି କହିଲା, ଦଶଟଙ୍କା ଅଠଣା । କେଉଁଥିରୁ କେତେ କମେଇବେ, ସେ ମନେ ମନେ ଠିକ୍ କରି ପାରିଲେ ନାହିଁ । ପକେଟ ଦରାଣ୍ଡି ଦେଖିଲେ, ବାରଅଣା ଅଛି । ସେଥିରୁ ଅଠଅଣା ପେଇଁ କରିସାରି ଟିକିଏ ବାଟ ଆସିଚନ୍ତି କି ନାହିଁ ମନେପଡ଼ିଲା, ସେମାନେ ଯଦି ପାନ ଖାଉଥିବେ···ଘରେ ପାନ ନଥିଲା ବୋଲି ତ ସେ ଆଜି ସକାଳେ ଖିଲେ ବି ପାନ ପାଟିରେ ପକେଇ ଯାଇପାରି ନଥିଲେ । ବାକୀ ଚାରିଅଣାର ପାନ ଧରି ଆସିଲେ ସେ ।

ଘରେ ହାଉଯାଉ ଶୁଣି ଦାସେ ଜାଣି ପାରିଲେ, ଅତିଥି-ଗୁଡ଼ାକ ଆସି ଯାଇଚନ୍ତି । ତେଣୁ ସେ ବାଡ଼ିଅଡ଼କୁ ବୁଲିଗଲେ । ଇଆଡ଼େ କେତେବେଳେ ଠୁକ୍ ଠୁକ୍ ଶବ୍ଦ ହେବ, ତାକୁ ଅପେକ୍ଷା କରି, କଥାଭାଷା ହେବା ସଙ୍ଗେ ସଙ୍ଗେ କାନକୁ ଡେରି ରହିଥାଆନ୍ତି ସୁସ୍ମିତା ଦେବୀ ।

ନନ୍ଦିତା ଭାଉଜ ପ୍ରଥମ କରି ସ୍ନେହର ନଣନ୍ଦ ଘରକୁ ଆସିଚନ୍ତି । ଘରଗୁଡ଼ିକ ଭାରି ପରିଷ୍କାର ଦେଖି ତାଙ୍କ ମନ ଭାରି ଖୁସି ହୋଇଉଠୁଚି । ଦେଖି ମୂର୍ଚ୍ଛନା, ଷ୍ଟୋରେଜ ଘରଟା ଦେଖି କହି ନନ୍ଦିତା ଭାଉଜ ବାଡ଼ି ଅଡ଼କୁ ଯାଉ ଯାଉ ଦାସଙ୍କ ଦୁଆର ବାଡ଼ିଆ ଆରମ୍ଭ ହେଲା ।

ନନ୍ଦିତା ଭାଉଜ, ହୁଏତ ମୂର୍ଚ୍ଛନା ଅଥବା ଶୁଣିପାରୁ ନଥିବେ ଭାବି ଡାକ ପକେଇଲେ, ମୂର୍ଚ୍ଛନା । କିଏ ବାଡ଼ିଆଡ଼େ ଡାକୁଚି ଆସିଲି ଦୁଆର ଫିଟେଇବି ।

ରନାଦେବୀ ବାଡ଼ଅଡ଼େ ନାହାଁନ୍ତି କାଶିପାର ଦାସେ ଦାଣ୍ଡ ଅଡକୁ ଅସିଲେ । ସୁସ୍ମିତାଦେବୀ ବାଡ଼ଅଡ଼େ ଯାଇ କୂଅର ପିଣ୍ଡାର ଦେଖନ୍ତି ତ ଦାସେ ନାହାଁନ୍ତି ।

ଦାସେ ଦାଣ୍ଡ ଅଡ ହେଇ ଘରେ ପଶୁ ପଶୁ ପ୍ରଥମେ ଦେଖିଲେ ନନ୍ଦିତା ଭାଉଜ ସାଙ୍ଗ ତଟିନୀକୁ । ତଟିନୀ ଦାସଙ୍କୁ ଦେଖି, ଅରେ ତୁମେ, କହି ଉଚ୍ଛ୍ୱସିତ ଅନନ୍ଦରେ ଯିମିତ ନାଚି ଉଠିଲା ।

ଦାସେ କହିଲେ ତୁ କମିତ ଇଠି, କହୁ କହୁ ସୁସ୍ମିତାଦେବୀ ସମସ୍ତଙ୍କ ଅଜାଣତରେ ଦଶଟଙ୍କା ଅଠଣା ଓ ଗୃରଣା ମୂଲ୍ୟର କନପତକ ଚଲଭଲ ନେଇ ଯାଇ କୁଅଠି ଗୁଞ୍ଜି ଦେଲେ ।

ତଟିନୀ ଦେବୀ କହିଲେ, ଇଠି ମାଷ୍ଟ୍ରାଣୀ ହେଇଚି । ଏଇ ମାସେ ହେଲା ସୁନ୍ଦରଗଡ଼ ସରକାରୀ ସ୍କୁଲରୁ ଚାକିରୀ ଛାଡ଼ି ଦେଇ ଅସିଚି ।

— ଅଉ ତୋ ନାଚ ?

—ସେଇ ନାଚ ଲାଗିତ ଏଠିକି ଅସିବା କଥା । ଏଠି ନାଚ ମାଷ୍ଟ୍ରାଣୀ ହେଇଚିନା, ଅଉ କଣ ଭାବୁଚ କି ?

—ଦରମା କେତେ ?

—ଦରମା କ'ଣ ? ନିଜେ ଗୋଟେ ସ୍କୁଲ୍ ଖୋଲିଚି । ପିଲା ଏ ଅସୁଚନ୍ତି, ସେମାନଙ୍କୁ ଶିଖଉଚି । ମାସକୁ ସେମାନେ ଯାହା ଦଉଚନ୍ତି ସେତିକି । ତେବେ ଦେଢ଼ଶ ଦୁଇଶହରୁ କମ ନୁହେଁ । ସେତେବେଳେ ସିନା ନାଚ ଗୀତର ଅଦର ନଥିଲା, ଏବେ ବଢ଼ିଗଲାଣି । ଏତେ ଛାତ୍ରୀ ହେଉଚନ୍ତି ଯେ ମୁଁ ନିଜେ ଏକା ଏକା ପାରୁନି । ଭାବୁଚି, ଅଉ ଦି ଚାରିଜଣ ମାଷ୍ଟ୍ରଙ୍କୁ ଅଣି ରଖିବି । ଭଲକରି ବଡ଼ କରି ଘରଭଡ଼ା ନେବି, ପିଲାଙ୍କୁ ନିଆ ଅଣିବା କରିବାପାଇଁ ରିକ୍ସା ଗୋଟେ ରଖିବି । ତୁମେ ତ ଜାଣ, ମୁଁ କେବେ ନିଜପାଇଁ କିଛି କରିଚି ? ବାହା ତ ହେଲିନି । ବୟସ ତ ଗଲା, ବାପା ମାଆ ତ ମଲେ । ଗାଁ କୁଅଡ଼େ ଯାଇ ରହିଲାଣି । ଏଇ

ଇତିଅରେ ଦେଶର କିଛି ସେବା କରି ପାରିବି ଯଦି ଜୀବନ ସାର୍ଥକ ହେଲବୋଲି ମନେ କରିବି । ତୁମେ ତ ଦେଖିଚ, କଲେଜରେ ଭେରାଇଟିସୋରେ କି ସୁନ୍ଦର ନାଚୁ ନଥିଲା ନନ୍ଦାଠା । ଗଲା ବାହାଠା ହେଇ, ପିଲାର ମା ହେଇ, ନଷ୍ଟ ହୋଇଗଲା ସେ । ଦେଶପାଇଁ କଣ ଦେଲା ? ଜନ୍ମ ନିୟନ୍ତ୍ରଣ ଅହ୍ୱାନ ଦିଅଯାଉଥିଲା-ବେଳେ, ଦେଲେ ଦେବ ଦେଶପାଇଁ ଗୁଡ଼ାଏ ଛୁଆ ପିଲା । ବୋଝ ଉପରେ ନଳିତା ବିଡ଼ା । ନାଚ ଥାଆନ୍ତା, ଦେଶ ବିଦେଶ ବୁଲି ଥାଆନ୍ତା, ନିଜେ ନାଁ କରି ଥାଆନ୍ତା, ଦେଶର ବି ନାଁ ରଖି ଥାଆନ୍ତା । ମୁଁ ଚିନ୍ତା କରୁଚି-ଦୀନବନ୍ଧୁ ବାବୁ ଦେଶର ସାଂସ୍କୃତିକ ବିକାଶ ନ ହେବାଯାଏ, ଆମେ ତଳେ ବି ଅଗେଇ ପାରିବାନି ।

ଏଇସେଇ ଉଠିମୀ ଦେବୀ......ଦାସଙ୍କ ସରସ କଥା ଶୁଣୁ ଶୁଣୁ ଯାହା ହାତରୁ ଦିନେ କପ୍ ପିଆଲା ଖସି ପଡ଼ି ଯାଇଥିଲା । ଦାସଙ୍କ ପାଖକୁ ଲାଗି ଆସି ଅବଶ ଶରୀରରେ କହିଥିଲେ, ଦୀନବନ୍ଧୁ ବାବୁ, ଏଇ ଗୋଟିଏ ମୁହୂର୍ତ୍ତି ଲାଗି ତୁମେ ମୋର ହେଇଯାଅ, ମତେ ତୋଳିଧର । ଏ ଓଠ, ଏ ବକ୍ଷ, ଏ ନିତମ୍ବ ସମଗ୍ର ଅବୟବ ଆଜି ତମର । ତମ ଦେହର ପ୍ରତି ରନ୍ଧ୍ରରେ ମୁଁ ଆଜି ପଶିଯାଇ ନିଜକୁ ହଜେଇ ଦେବାକୁଂ ଚାହୁଁଚି ।

ଦାସଙ୍କ ବୁକୁତଳେ ସେତେବେଳେ ଉଠିମୀଦେବୀଙ୍କ ନୁପୁରର ରୁଣୁ ଝୁଣୁ ଛନ୍ଦ ଭଳି ଗୁଡ଼ାଏ ଶବ୍ଦ ହେଉଥିଲା । କିନ୍ତୁ ସେ ପରକୁ ନଚେଇବାରେ ଅଭ୍ୟସ୍ତ ଥିଲେ ମଧ୍ୟ ନିଜେ ନାଚିବାରେ ଅଭ୍ୟସ୍ତ ନଥିବାରୁ, ନାଚିପାରି ନଥିଲେ ।

ସେତେବେଳକୁ ନନ୍ଦିତା ଦେବୀ ପରଦା ଅଢୁଆଳରେ ନଣନ୍ଦ ସୁସ୍ମିତା ଦେବୀଙ୍କ ପାଖରେ ବସିଥିଲେ । ଉଠିମୀ ଦେବୀଙ୍କ ସାଥିରେ କଥାବାର୍ତ୍ତା ହେବାବେଳେ ଦାସଙ୍କ ପାଟି ନନ୍ଦିତାଦେବୀଙ୍କ କାନରେ ପଡୁଥିଲା । ପରିଚିତ କଣ୍ଠସ୍ୱର ଜଣାପଡ଼ୁଥିଲା ତାଙ୍କୁ... ପରିଚୟଟା କ୍ରମଶଃ ସନ୍ଦେହର ସୀମାନ୍ତ ଡେଇଁ ; ଯେତେବେଳେ

ଆରପଟକୁ ପୂର୍ଣ୍ଣ କରିବାକୁ ବସିଲା, ନନ୍ଦିତା ଦେବୀ ଅଜ ସମ୍ଭାଳି ନପାରି ନଣନ୍ଦଙ୍କୁ ପଚାରିଲେ, ଏହି ମରଦ ଜଣଙ୍କ କିଏ କି ହେ ମୂର୍ଚ୍ଛନା ? ଯାଙ୍କୁ ତ ଚିହ୍ନିଲାଭଳି ମନେ ହେଉଚି । ଦୀନବନ୍ଧୁ ବାବୁ କି ?

ମୂର୍ଚ୍ଛନା ଦେବୀ କହିଥିଲେ, ଅଜ କିଏ ଏତେ ଗପିବ ଭାଉଜ ? ପୃଥିବୀରେ ପରା ସେଇ ଗୋଟିଏ ଲୋକ ।

—ସେ ପରା ରାତି ବାରରେ ଫେରନ୍ତି ?

—ଫେରନ୍ତି ଯେ... ପକେଟରେ ପଇସା ନଥିଲେ, ଥରେ ଥରେ ଅଫିସ କାମ ସାରି ଦିନ ବୁଡ଼ିଲାବେଳେ ମଧ୍ୟ ଫେରି ଆସନ୍ତି । ନ ହେଲେ ବାଟରେ କୁଆଡ଼ିକି କଣ ପ୍ଲଟଟାଏ ମନେ ପଡ଼ିଗଲେ, ଉପନ୍ୟାସଟାଏ ଆରମ୍ଭ କରିଦେବା ଭାବି, ଦି ଚାରିପୃଷ୍ଠା ଗାରେଇ ଦେବାକୁ ଧାଇଁ ଆସନ୍ତି । କହନ୍ତି, ହଠାତ୍ କୁଆଡ଼େ ପ୍ଲଟ୍ଟା ଖସି ପଳେଇବ କାଗଜ କଲମରେ ଭିଡ଼ି ଧରିବାପାଇଁ ଚାଲି ଆସିଲି । ଏ ଘରକୁ ଇମିତ ପୃଷ୍ଠେ, ଦିପୃଷ୍ଠା, ନଇଲେ ଦାଣ-ପଦର, କୋଡ଼ିଏ, ପଚିଶେ ପୃଷ୍ଠି କିଅ ପ୍ଲଟ କେତେ ଯେ ଅଚେ ତା'ର ହିସାବ ଏ ଘର ଗୃହପତି ଓହିଲା ହେଇଥିବା କାଗଜ ଲେଖାଗୁଡ଼ାକ ମନେ ରଖନ୍ତି । ହୁଏତ ମତେ କେତେବେଳେ କେତେବେଳେ ସେ ଦାୟିତ୍ୱ ଦିଅଯାଏ । ଥରେ ଥରେ ସେ ନିଜେ ଲକ୍ଷ୍ମୀଗୁଡ଼ାକୁ ମଧ୍ୟ ସେ ଦାୟିତ୍ୱ ଦେଇ ପକେଇ ପରେ ମୋ ଉପରେ ଗାଳି ଉଜାଡ଼ନ୍ତି । ଘର ନୁହେଁ ଭାଉଜ ଇଏ ଗୋଟାଏ ପାଗଳ ଗାରଦ । ହଉ ଧରିଲ ଧରିଲ, କହି ସୁସ୍ମିତାଦେବୀ ପ୍ଲେଟରେ ରାଜଭୋଗ, ସିଙ୍ଗଡ଼ା ଅର୍ଦ୍ଧ ସଜାଡ଼ି ଭାଉଜଙ୍କ ହାତକୁ ବଢ଼େଇଲା ମାତ୍ରେ, ନନ୍ଦିତାଦେବୀ ନାଇଁକଲେ । କହିଲେ ଅଗ ତମବାବୁଙ୍କୁ ଦିଅ, ତାପରେ ଆମକୁ ଦେବ । ଲାଜମାଡ଼ୁଚି ଯଦି ଦିଅ ମୁଁ ନିଜେ ଦେଇ ଆସିବି । ଲାଜକୁଳି ଭାଉଜ ଯିଏ ଦାଦାଙ୍କ ସାମନାରେ କଥାବାର୍ତ୍ତା ହେବାପାଇଁ ଲାଜ କରେ, ସେ ପୁଣି ଦାସଙ୍କୁ ନିଜ ହାତରେ ଜଳଖିଆ ପରଶିବେ,

ଏ ବିଶ୍ୱାସ ସୁସ୍ମିତାଦେବୀଙ୍କର ନଥିଲା । ଅଟ୍ଟହାସରେ କହିଲେ, ତମେ ଠିକ୍ ? ଯାଉ ଯାଉ ତମର ରେଖା ବୁଢ଼ୀ ଯାଇଥିବ ।

ନନ୍ଦିତାଦେବୀ ନଣନ୍ଦ କ'ଣ ଯେ କହିଲେ, ବୁଝିପାରି ନଥିଲେ । ତାଙ୍କର ଆଖି ଛଳ ଛଳ ହୋଇ ଉଠିଥିଲା । ମୁହୂର୍ତ୍ତକ ଭିତରେ ତିନିକୋଡ଼ି ବର୍ଷର ଏକ ନାତିଦୀର୍ଘ ଫ୍ଲେଟ ଅତୀତ ଯିମିତି ତାଙ୍କ ମନରେ ଆସି ବାଡ଼େଇ ହେଇ ଚାଲି ଯାଇଥିଲା । ସେ ଖାଲି କହିଥିଲେ, ତୁମେ ମୋଠୁ ବୟସରେ ସାମାନ୍ୟ ବଡ଼ ସିନା ମୂର୍ଚ୍ଛନା, ନହାତି ପିଲା । ତୁମେ ଯିମିତି ତୁମ ଦାଦାଙ୍କ ଭଉଣୀ, ମୁଁ ଠିକ ସିମିତି ତୁମ ଦୀନବନ୍ଧୁ ବାବୁଙ୍କର ଭଉଣୀ । ସଖି ଭଉଣୀ ନୁହଁ କିନ୍ତୁ ତାଠୁ ବଳି । ଦୀନବନ୍ଧୁବାବୁ ତମର ପାଗଳ ନୁହଁନ୍ତି, ଦୁର୍ବଳ ନୁହଁନ୍ତି ମୂର୍ଚ୍ଛନା, ସମ୍ପୂର୍ଣ୍ଣ ସବଳ ।

ନନ୍ଦିତଦେବୀ ଆଖିର ଲୁହକୁ ପୋଛି, ନିଜ ମନକୁ ଟାଣ କରିନେଇ କହିଲେ, ହଉ ଦେଲି ମୁଁ ଦେଇ ଆସେ । ଭାଇଙ୍କ ବହୁଦିନ ହେଲା କିଛି ଦେଇ ପାରିନି ।

ନନ୍ଦିତା ପରଦାକୁ ଆଡ଼େଇ ପଶି ଆସିଲା ଭିତରକୁ । ତଟିନୀଦେବୀ କ'ଣ ଗୋଟାଏ କଥା ଅତି ଉତ୍ସାହିତ ହେଇ ସେତେବେଳେ ବର୍ଣ୍ଣନା କରୁଥିଲେ । ହାତ ଗୋଡ଼ଗୁଡ଼ାକ ତାଙ୍କର ଆଉ ଥୟ ହେଇ ରହୁ ନଥିଲା । କହୁ କହୁ ଦୀନବନ୍ଧୁ ବାବୁଙ୍କ ପାଖକୁ ଲଗି ଆସିବାକୁ ଉପକ୍ରମ କରୁଥିଲେ ସେ । ନନ୍ଦାକୁ ଦେଖି କହିଲେ, ଏଇ ନନ୍ଦିତା ମ—ଆମ ସାଙ୍ଗରେ ପଢ଼ୁ ନଥିଲା ?

ନନ୍ଦିତାଦେବୀ କହିଲେ, ଚୂପକର ତଟି । ଯୁଉଟିକି ଯିବ, ସେଇକଥା । ସ୍ଥାନ କାଳପାତ୍ର ବୁଝି ଭଲ କଥାବାର୍ତ୍ତା କର ।

ନନ୍ଦିତାଦେବୀ ଟେବୁଲ ଉପରେ ଜଳଖିଆତକ ଥୋଇ ଦେଇ, ଦାସଙ୍କୁ ପ୍ରଣାମ କଲା ।

ନନ୍ଦା ! କହୁ ଦାସେ ଦ ଚକିମନଟ କାଳ କ'ଣ ଯେ ହୋଇ ଉଠିଲେ, ଯେ ଦେଖିଥିବ ସିଏ କହିବ ।

ନନ୍ଦା ଭୁନି ଗଳାରେ କହିଲା, ହଁ ଭାଇ ମୁଁ । ସେତେବେଳକୁ ତା ଆଖିରେ ଲୁହ ଡବ ଡବ ହୋଇ ଆସିଥାଏ । ନିଜକୁ ରୋକି ନପାରି, ପୁଣି ଅରପଠ ଘରକୁ ପଶି ଯାଇଥିଲି ସେ ।

ସୁସ୍ମିତାଦେବୀଙ୍କର ମନେ ହେଉଥିଲା, ଗୋଟାଏ ସିରିଅସ୍ ବିୟୋଗାତ୍ମକ ନାଟକ ଦେଖୁଚନ୍ତି ସେ । ଏଥିରେ କିଏ ନାୟକ, କିଏ ନାୟିକା, କିଏ ଭିଲେନ ଓ ନିଜେ କି ଭୂମିକାରେ ଅବତୀର୍ଣ୍ଣ ହୋଇଚନ୍ତି, ସେ କିଛି ବୁଝି ପାରୁ ନଥିଲେ । ତାଙ୍କର ଧାରଣାଥିଲା, ଡ଼ର୍· ଥର୍ ନନ୍ଦିତା ଭାବୁଜ ବିଚଳିତ ହୋଇ ଫେରି ଆସିବେ କିନ୍ତୁ ବାତ୍ସଲ୍ୟସ୍ନେହରେ ସେ ଆଖିରେ ଆଖିଏ ହବ ଲୁହ ଧରି ଫେରିଲେ ।

ଦାସଙ୍କ ଜୀବନ ନାଟକରେ ତଟିନୀଦେବୀଙ୍କ ଭୂମିକା ଲୁହର ଭୂମିକା ନୁହେଁ, ହସର ଭୂମିକା । ତେଣୁ ତଟିନୀ ଲୁହର ଗୁରୁତ୍ୱକୁ ନବୁଝି ହସି ହସି କହିଲା, ନନ୍ଦାଟା ନା, ନିହାତି ପାଗଳଟା । ଦାସଙ୍କୁ ଲକ୍ଷ୍ୟ କରି କହିଲା, ତୁମେ ଏତେ ବିଚଳିତ କାହିଁକି··· ? ସେଇଟା ସିମ୍ପିଲ କଥା କଥାରେ, ପରିଚିତ ଲୋକଙ୍କୁ ବହୁଦିନ ପରେ ଦେଖିଲେ କାନ୍ଦ ପକାଏ । ଭାରି ସେଣ୍ଟିମେଣ୍ଟାଲ । ସେଦିନ, ନାଚୁ ନାଚୁ, ଅଡ଼ିଏନ୍ସ ଭିତରୁ କିଏ କ'ଣ ରିମାର୍କ ପାସ କଲା ବୋଲି, କାନ୍ଦି କାନ୍ଦି ନାକେଦମ ହୋଇ ପଡ଼ିଥିଲା, ତୁମେହିଁ ତାକୁ ବୁଝାଉଥିଲ ପରା ?

ଦାସେ କିନ୍ତୁ ଚୁପ ରହିଲେ । ତଟିନୀଦେବୀଙ୍କ କଥାର କୌଣସି ଉତ୍ତର ଦେଲେନି । ତାଙ୍କ ବାହାର ଆଖିରୁ ଲୁହ ଝରୁ ନଥିଲା ସିନା, ଭିତର ଆଖିରୁ ସେତେବେଳକୁ ଯଥେଷ୍ଟ ଲୁହ ଝରି ସାରିଥିଲା ।

ତଟିନୀଦେବୀ ହଠାତ୍ ହାତରେ ଥିବା ଲେଡ଼ିଜ୍‌ୱାଚକୁ ଦେଖି କହିଲେ, ଅସିଲ୍ ନନ୍ଦା ଯିବା, ସିଆଡ଼େ ପିଲେ ଆସି ସାରିବେଣି । ଯୋଜନା ସପ୍ତାହ ପାଇଁ ନାଚର ବରାଦ ଅଛି,

ପାଞ୍ଚଶହ ଟଙ୍କା ବନ୍ଧନା ଦେଇ ଯାଇଚନ୍ତି । ମନ୍ତ୍ରୀ, ରାଜ୍ୟପାଳ ଆସିବେ, ଠିକଏ ଭଲଭାବରେ ରିହର୍ସାଲ ନହେଲେ, ଅଡ଼ୁଆ ଛଡ଼ୁଆ ହେଇଯିବ । ମନ୍ତ୍ରୀଙ୍କ ସ୍ତ୍ରୀ କୁଆଡେ ପିଲାଦିନେ ଭଲ ନାଚୁଥିଲେ । ଭାରି ନାଚରେଖି ଦେଖନ୍ତି ସେ ।

ହଉ ଥାଉ, ଦୀନବନ୍ଧୁ ବାବୁ, ମନେଥିଲେ ହେଲା, ଠିକଏ ପରିସ୍ଥିତିରେ ସାହାଯ୍ୟ କରିପାରିଲେ ଯଥେଷ୍ଟ । ଆଜି ଦିନେ ଅସିବା, କଥାବାର୍ତ୍ତା ହେବା । ଘରଟା ଦେଖି ନଥିଲି ବୋଲି ସିନା ଆସିବା ସମ୍ଭବ ହେଉ ନଥିଲା । ଦେଖିଗଲି ଯେତେବେଳେ ଧରନ୍ତୁ ଏଣିକି ନାଇଁ । ହଁ, ମନେ ମନେ ଗୋଟାଏ ପରିକଳ୍ପନା କରିଚି କିନ୍ତୁ ମନେ କରିବେନି, ଅପଣ ହଁ କଲେ ହେଲା ।

ତଟିନୀ ଦେବୀଙ୍କ ସାଥିରେ ଆଜି ଯେଉଁ ତିନି ଗୃହ ଜଣ ତରୁଣୀ ଆସିଥିଲେ, ସେମାନେ ରାଜାଙ୍କ ଦରବାରରେ ମୂକ ପାରିଷଦ ବସିଲାଭଳି ବସିଥିଲେ । ସୁସ୍ନାତା ସେମାନଙ୍କୁ ଗୋଟିଏ ଗୋଟିଏ ପ୍ଲେଟ ଧରେଇ ଦେଇ ଯାଇଥିଲେ । ତଟିନୀଦେବୀ ସିନା କଥା ହେଉ ହେଉ ସବୁତକ ସାରି ଦେଇଥିଲେ । ଦାସେ ଖାଇ ନାହାନ୍ତି ଦେଖି, ସେମାନେ ଅଭଦ୍ରତା ହେବ ବୋଲି ପ୍ଲେଟରେ ହାତ ଦେଉ ନ ଥିଲେ; କିନ୍ତୁ ପ୍ଲେଟଗୁଡ଼ିକ ସେମାନଙ୍କ ପାଖରେ ଥିଲା । ଦାସେ ଖାଆନ୍ତୁ ବୋଲି କହିବା ମାନେ ଝାକୁ ଝାକୁ ଗିଳି ଯିବାକୁ ସେମାନଙ୍କ ପାଟି ପ୍ରସ୍ତୁତଥିଲା । ତଟିନୀ ଦେବୀ ପ୍ଲେଟଗୁଡ଼ିକ ଖାଲି ହେଇନି ଦେଖି କହିଲେ, କଲେ ତୁମେ-ମାନେ ଏ ଯାଏଁ ଖାଇନ ? ଦେଲି ଦେଲି ଶୀଘ୍ର ସାରିଲ...ଅଲେ ଏ ନଦା କ'ଣ ତୋର ଅଣ୍ଟୁପାତ ଲାଗା ସରିଲା ଅ...ଅ ବେଳ ହେଇ ଗଲଣି ।

ସୁସ୍ନାତା ଦେବୀ ସିଅଡ଼ୁ କହିଲେ, ତୁମେମାନେ ଯାଅ ନାନୀ, ଭାଉଜ ଠିକେ ଘୁଞ୍ଚ କରି ଦିବେ । ମୁଁ ନିଜେ ଯାଇ ଘୁଞ୍ଚଦେଇ ଅସିବି... । ଆଜି ଗୁରୁବାରଟା ଚଣ୍ଡୀଙ୍କ ଦର୍ଶନ ସାରିଯିବେ ।

ମୂକ ମହଲା ପାରିଷଦ ବର୍ଗଙ୍କ ଜଳଖିଆ ଭକ୍ଷଣ ସେତେ-ବେଳକୁ ସରିଯାଇଥିଲା । ସାମ୍ରାଜ୍ଞୀ ତଟିନୀ ଦେବୀ ଆସନ ଛାଡ଼ିବା ମାତ୍ରେ ସେମାନେ ଆସନ ଛାଡ଼ିଲେ । ସମସ୍ତେ ଦାସଙ୍କୁ ନମସ୍କାର କରି ତଟିନୀ ଦେବୀଙ୍କ ପଛେ ପଛେ ଗୃହତ୍ୟାଗ କଲେ ।

ତା ପରେ ବହୁ ସମୟ ଧରି ଘରଟା ନିସ୍ତବ୍ଧ ରହିବା ପରେ ସୁସ୍ମିତା ଦେବୀ କହିଲେ, ଭାବୁଛି ଆଜି ଦିନଟା ଏଠି ରହିଯାଅ । ଘରେ ତ କୁନ୍ତଳା ଅଛି, ପିଲାଙ୍କ କଥା ବୁଝିବ । ମୁଁ ଲୋକ ପଠେଇ ଖବରଟା ଦେଇ ଦେବି ।

ଦାସେ ଡାକିଲେ ନନ୍ଦା, ପାନ ଭାଙ୍ଗିଲୁ ?

ନନ୍ଦତା ପାନ ଭାଙ୍ଗି ଆଣି ଦେଲା । ଦାସେ ପଚାରିଲେ, ଏଠିକି କେବଠୁ ଆସିଲଣି ?

ସୁସ୍ମିତା ଦେବୀ ଉପରେ ପଡ଼ି କହିଲେ, ଯୋଉ ଦିନ ମୁଁ ପ୍ରଥମ କରି ତୁମକୁ କହିଲି ଯେ ଆମ ଦାଦା ହେଇଟା ସମ୍ବଲପୁରରୁ ଏଠିକି ବଦଳି ହେଇ ଆସିଚନ୍ତି, ତାଙ୍କ ଘରକୁ ଟିକିଏ ଯାଉଚି ବୋଲି ସେଇ ଦିନଠୁ ।

ଏହି କଥାର କୌଣସି ମାନେ ନାହିଁ ବୋଲି ନନ୍ଦତା ବୁଝିପାରି କହିଲା, ପ୍ରାୟ ଡନମାସ ହେଲା ।

—କ'ଣଟିଏ ଟହିଇଚପରି ?

ପୁଣି ସୁସ୍ମିତା ଦେବୀଙ୍କ ସଂଳାପ—ଜାଣି ଶୁଣି ଯାହା ପଚାରିନା !! କହୋ ସେଦିନପରି ସେଇଟିଅ କଥା ଏତେ କରି କହୁଥିଲ । କିଏ ନ ଶୁଣି ଖାଲି ହୁଁ ମାରୁଥିଲ ?

ନନ୍ଦା କହିଲା, ଝିଅଟିଏ । ଦି'ବର୍ଷ ହେଇ ଗଲାଣି ।

—ଦେହ ଭଲ ଅଛି ?

—ଜନଦିନ ହେଲା, ଟିକିଏ କାଶ ହେଉଥିଲା, କାଲି ରାତରୁ ଛାଡ଼ିଚି । ଏଠା ଜଳବାୟୁ ତା ଦେହରେ ଯାଉନି ।

ତୋର ?

—ମୋର ଅଭ କ'ଣ ? କେତେବେଳେ ଭଲ କେତେ-ବେଳେ ଖରାପ ।

—ମତେ ମନେ ପଡ଼ୁଛି ?

—ମନେ ପଡ଼ିଲେ କ'ଣ କରିବି ଭାଇନା, ଠିକଣା ଜାଣି-ପାରି ନଥିବାରୁ କିଛି ହେଲେ ଲେଖି ପାରେନି । ଠିକ୍ ଖବର ଅନ୍ତର ନାଅ ବୋଲି ତାଙ୍କୁ କହି କହି ଥକି ଗଲି, ହେଲାନି । ଖାଲି କହନ୍ତି, ସେ ତ ଆଜି କଟକରେ ତ କାଲି କଲିକତାରେ, ଟୁରିଷ୍ଟ, ଲେଖକ ଲୋକ, କୁଆଡ଼େ ବୁଲୁଥିବ, କମିତ ଜାଣିବି, କାହାକୁ ପଚାରିବି ? ଥରେ ଜଣେ ଜଣେ ଆସି କହିଲା, ଦୀନବନ୍ଧୁ ଦାସ ବୋଲି ଜଣେ ଟୋକାଳିଆ ଲୋକ ଆଜି ଟାଉନ ହଲରେ ବକ୍ତୃତା ଦେଇ ସମସ୍ତଙ୍କୁ ମୁଗ୍ଧ କରିଦେଲେ । ପରେ ପରେ ସମ୍ବଲପୁର ଗୋଟାକଯାକ ଫୋନ ଫାନ କରି ତୁମର ବହୁତ ସନ୍ଧାନ ନେଲେ ସେ, ଶେଷରେ ଜଣେ କିଏ କହିଲା ଯେ ଏହି ରାତି ଦଶଟା ଗାଡ଼ିରେ ସେ ରାଉରକେଲା ଚାଲିଗଲେ । ମୋ ମନ ଯାହା ହେଲା, କ'ଣ କହିବି ?

ଦାସେ କହିଲେ, ହଁ ବର୍ଷେ ତଳେ ସେ ଥରେ ସମ୍ବଲପୁରର କି ଗୋଟେ ସଭାକୁ ଯାଇଥିଲେ, ତାଙ୍କର ଠିକ୍ ଭାବରେ ମନେ ନାହିଁ ।

ନନ୍ଦିତା ଦେବୀ କହିଲେ, ଆଜି ମଧ୍ୟ କ'ଣ ଦେଖାହେଇ ଥାଆନ୍ତା ? ଭାଉଜ ସବୁଦିନ ଯାଇ କହନ୍ତି, ମୁଁ କ'ଣ ସବୁବେଳେ ତୁମ ଘରକୁ ଅସୁଥିବି, ଆମ ଘରକୁ ଦିନେ ବି ଆସିବନି ?

ସୁସ୍ମିତାଦେବୀଙ୍କୁ ନନ୍ଦିତା ଦେବୀ ପ୍ରଥମ ଥର କରି ଭାଉଜ ବୋଲି କହିଲେ । ପରସ୍ପର ମଧ୍ୟରେ ଭାଉଜ ସମ୍ବନ୍ଧ ଓ ପରସ୍ପରକୁ ଭାଉଜ ବୋଲି ଡାକିବା ଭିତରେ ପଡ଼ି ସୁସ୍ମିତା ଦେବୀଙ୍କ ମୁଣ୍ଡ ଗୋଳମାଳ ହେଇଗଲା । ଶେଷରେ ସେ ଠିକ୍ କରିନେଲେ ଶ୍ୟାମଳ ଦାଦା ସହିତ ତାଙ୍କର ଯେଭଳି ସମ୍ପର୍କ, ବୋଧହୁଏ ନନ୍ଦିତା ଭାଉଜଙ୍କର ଦାସଙ୍କ ସହିତ ସମ୍ପର୍କଟା ଠିକ୍ ସେହିଭଳି ।

ସୁସ୍ମିତା ଦେବୀ ଶ୍ୟାମଳ ବାବୁଙ୍କ ଗୃହର ହାତରେ ଭାଉଜଙ୍କ ଆଜି ରାତିକ ଏଇଠି ରହିବେ ବୋଲି ଖବର ପଠାଇବା ପୂର୍ବରୁ, ଶ୍ୟାମଳ ବାବୁଙ୍କ ଘରୁ ଖବର ଆସି ପହଞ୍ଚିଲା, ଶୀଘ୍ର ଆସ, ଶ୍ୟାମଳ ବାବୁ ଏଇ ଗାଡ଼ିରେ ଟୁର୍‌ରେ ଯିବେ ।

ତେଣୁ ନନ୍ଦିତା ଦେବୀ ସୁସ୍ମିତା ଦେବୀଙ୍କ ଘରେ ରହି ପାରିଲେନି ।

ଗଲାବେଳେ କହି ଦେଇଗଲେ, ବୁଝିଲୁ ମୂର୍ଚ୍ଛନା, ତୁମ ପାଗଳ ଦୀନବନ୍ଧୁବାବୁଙ୍କ ଦୁଃଖ, ଦୈନ୍ୟର ଅତୀତଟା ମୋର; ସୁଖର ବର୍ତ୍ତମାନ ଓ ଭବିଷ୍ୟତ ଗୁଡ଼ାକ ତୁମର । ଭବିଷ୍ୟତରେ ଯଦି ତାଙ୍କ ଜୀବନରେ କିଛି ଦୁଃଖ ଆସେ, ମୋ ପାଇଁ ଛାଡ଼ିଦେବ । ମୁଁ ତାର ସମାଧାନ କରିବି । ସେ ଗୁଡ଼ାକ ଅତୀତ ହୋଇଯିବା ପରେ, ମୋର ହୋଇ ରହିବ ।

ନନ୍ଦିତାର କେହି ସହୋଦର ଭାଇ ନଥିଲେ ।

ସେ ପୃଥିବୀରେ ଭୂମିଷ୍ଠ ହେବା ପରଠାରୁ ଘରେ ସେ ଦେଖିଥିଲା, ଜଣେ ମା, ଜଣେ ବାପ ଆଉ ଜଣେ ଭାଇ···। ତାର ବୁଦ୍ଧି ହେବା ପରେ ଅର୍ଥାତ୍ ତୃତୀୟ ଶ୍ରେଣୀରେ ପଢ଼ିଲାବେଳେ ସେ ଦେଖିଥିଲା ସେ ଯାହାକୁ ଭାଇ ବା ଭାଇନା ବୋଲି ଡାକେ ସେ ପଢ଼ୁଛନ୍ତି ଅଷ୍ଟମ ଶ୍ରେଣୀରେ । ଭାଇ ତାହାହେଲେ ତାଠୁ ବହୁତ ଆଗରୁ ଜନ୍ମ ହୋଇଥିଲେ···ଏଇ ଧାରଣା ନେଇ ସେ ଏ ପର୍ଯ୍ୟନ୍ତ ଚାଲି ଆସିଥିଲା ।

ବାପ ଓ ମା ଏକାଦିନରେ ଏକା ରୋଗରେ ମଲେ । ଘରେ ଛାଡ଼ି ଦେଇଗଲେ ଏ ଭାଇ ଭଉଣୀ ଦିଓଟିଙ୍କ । ବଡ଼ କଷ୍ଟରେ ଜୀବନ-ନିର୍ବାହ କରିବାକୁ ପଡ଼ିଲା ସେମାନଙ୍କୁ । ସେତେବେଳକୁ ସେମାନଙ୍କର ବୟସ ଯଥାକ୍ରମେ ଏକୋଇଶି ଆଉ ସତର । ବାପା ଛାଡ଼ି ଯାଇଥିଲେ ଷାଠିଏଟି ନଡ଼ିଆଗଛ, ଆଉ ଦି'ମାଣ ଚିପ ଜମି ଯାହାର କି ମୂଲ୍ୟ ମୋଟରେ ପନ୍ଦରଶହ ଟଙ୍କା । ଦୀନବନ୍ଧୁଙ୍କର ଆଇ·ଏ ବେଳକୁ, ନନ୍ଦିତାର ନବମ କି ଦଶମ ଶ୍ରେଣୀ ।

ଭୋକ ଉପାସରେ ଦିହିଁଙ୍କର କେତେ ଯେ ଦିନ କଟିଛି, ସେଇକଥା ମନେ ପଡ଼ିଯାଏ ବୋଲି ଦୀନବନ୍ଧୁ ଦାସଙ୍କୁ ଦେଖିଲା ମାତ୍ରେ ନନ୍ଦିତାର ଆଖିରୁ ଲୁହ ଝରି ଆସେ । କେତେବେଳେ କଇଁ ନାଡ଼, କେତେବେଳେ ସ୍ୱାଡ଼ୁ ସିଆଡ଼ୁ ଗୁଡ଼ାଏ ପତର ଆଣି ସିଝେଇ ଖାଇବାକୁ ପଡ଼େ ସେମାନଙ୍କୁ ।

ନନ୍ଦିତା ନାଁ ପଛରେ ପଟ୍ଟନାୟକ ଓ ଦୀନବନ୍ଧୁ ବାବୁଙ୍କ ନାଁ ପଛରେ ଦାସ ଥାଏ । ତେଣୁ ଏମାନେ ସହୋଦର ଭାଇ ଭଉଣୀ ନୁହନ୍ତି, ଏମାନଙ୍କ ସଂପର୍କ ଅଲଗା ବୋଲି ସାହି ପଡ଼ିଶାଙ୍କର ସନ୍ଦେହ ରହିଥାଏ । ଇଏ ଇମିତ ଗୋଟାଏ ସାହି ଯେ ଏଠି ସାହିପଡ଼ିଶା ବୋଲି ଯେଉଁମାନେ ରହନ୍ତି ସେମାନେ ସମସ୍ତେ ସରକାରୀ ଚାକିରିଆ । ଆଜି ଗୋଟିଏ ପରିବାର ଏଘରେ ଅଛନ୍ତି ତ କାଲି ଆଉ ଗୋଟିଏ ପରିବାର ଆସି ଦେଖାଦିଏ । କିଏ କେତେବେଳେ ବଦଳି ହେଇ ଯାଆନ୍ତି । ତେଣୁ ପ୍ରଥମେ ଦୀନବନ୍ଧୁ ଦାସେ ଏ ଘରକୁ ଯେତେବେଳେ ଆସିଲେ, ସେତେ-ବେଳେ ରହୁଥିବା ସାହିପଡ଼ିଶା ଲୋକଙ୍କ ଛଡ଼ା ଏମାନଙ୍କ ସଂପର୍କ ବିଷୟ କେହି ଜାଣି ନ ଥିଲେ । ଏପ୍ରକାର ସାହିପଡ଼ିଶାଙ୍କ ଆଖିରେ ସେମାନେ ସେତବେଳକାର ଛୋଟପିଲା ନୁହନ୍ତି, ସଂପୂର୍ଣ୍ଣ ଯୁବକ ଯୁବତୀ । କିଏ କହିଲା, ଏ ହନ୍ତୁଡ଼ା ଏଠି ଲୁଚିବାକୁ ଭାଇ-ଭଉଣୀ ଡାକ ଡୁକା ହେଉଚନ୍ତି, ସ୍ୱାମୀସ୍ତ୍ରୀର କାରବାର ଚଳାଇ-

ଚନ୍ଦ୍ର । କିଏ ବା କହିଲା, ନାଇଁରେ ଏ ଟୋକାଟା ଏ ଟୋକୀଟାକୁ ଭିଜି ଗୋଟାଏ ବ୍ୟବସାୟ ଚଳେଇଛି ।

ଜଣେ ମାତ୍ର ଜାଣନ୍ତି ସେ ହେଉଚନ୍ତି ସୁନାକର ଗୋସ୍ଥପୁତ । ମ୍ୟୁନିସପାଲିଟିର କର୍ମଚାରୀ ସେ । ଏ ସହରର ମ୍ୟୁନିସିପାଲିଟି ତ ସେ ସହରର ମ୍ୟୁନିସପାଲିଟି ହୋଇ ବଦଳି ଯିବନି । ତେଣୁ ସେ ସ୍ଥାୟୀ ।

ଥରେ ଥରେ ଏ ବାଟେ ଗଲାବେଳେ ନନ୍ଦା କିମ୍ବା ଦିନୁ ବୋଲି ଡାକିଟିଏ ପକେଇ ଦେଇ ଯାଆନ୍ତି । ନନ୍ଦାର କଲେଜ ଦରମାଦିଅ ଦିନ କିଛି କିଛି ସାହାଯ୍ୟ କରନ୍ତି । ଥରେ ଥରେ ନିଜେ କଲେଜକୁ ଯାଇ ପୂରିଦରମାଟା ଦେଇ ଦେଇ ଚାଲିଆସନ୍ତି । ଏ କଥା କେହି ଜାଣନ୍ତି ନି, କେବଳ ତାଙ୍କ ସ୍ତ୍ରୀ ଜାଣନ୍ତି ।

ଶେଷରେ ପେଟ ଅନ୍ତରିକି ଜଳିଉଠିବାରୁ ଦାରିଦ୍ର୍ୟକୁ ସମ୍ଭାଳି ନ ପାରି ଦୀନବନ୍ଧୁ ଦାସେ କହିଲେ, ନନ୍ଦା ମୋ ପାଠ ପଢ଼ା ଏଇକରେ ଥାଉ, ମୁଁ ଚାକିରି କରିବି । ତୁ କିନ୍ତୁ ପଢ଼ା ବନ୍ଦ କରନା ।

ନନ୍ଦତାର କିନ୍ତୁ ଏବାଜିଦ ଯାହା ପଢ଼ିଛି ଯଥେଷ୍ଟ ହେବ, ମୋ ଲାଗି କୁଆଡ଼ି ଚାକିରି ମିଳିଲେ ବ୍ୟବସ୍ଥା କର, ମୁଁ ଚାକିରି କରିବି, ତୁମେ ପଢ଼ିବ ।

ସୁନାକର ବାବୁ ଆସି ଶେଷରେ ଏ କଳି ଭଙ୍ଗେଇଲେ । କହିଲେ, କିଏ ଚାକିରି କରିବା ଦରକାର ନାଇଁ, ଦିହେଁ ପଢ଼, ମୁଁ ପଇସା ଦେବି ।

ଦୀନବନ୍ଧୁ ଦାସେ ବହୁତ ନାହିଁ ନାହିଁ କଲେ, କିନ୍ତୁ ଦେଉ୍ୟା ରହିଲା । ସୁନାକର ଗୋସ୍ଥପୁତ କହିଲେ ଝିଅଟା ମାଟ୍ରିକ୍ ହେଲି ଅନ୍ତତଃ କଲେଜରେ ଦି ଡିନାଟା କ୍ଲାସ ମାଡ଼ିଯାଉ, ସେତିକେବେଳକୁ ତୋର ବି. ଏ ଟା ସରି ଯାଇଥିବ, ଚାକିରି କଲେ ଚଳିବ । ମୋତୁ ପଇସା ଯଦି ଖାଲି ଖାଲିରେ ନବାକୁ

ଅଛନ୍ତି, ଧାର କରି ନିଅ, ସୁଧ ମୂଳ କରି ଯଦି ଦେଇପାରି, ତାହାହେଲେ ବି ଚଳିବ ।

ଶେଷରେ ଧାର କଥାଟାହିଁ ସାର ହେଲା । ଦହେଁ ପଢ଼ିଲେ । ଦାସଙ୍କ ବି. ଏ. ଶେଷ ପରେ ପରେ ନନ୍ଦା ଯାଇ ହାଜର ହେଇଥିଲା ଆଇ. ଏସ୍‌ସିର ପ୍ରଥମ ବର୍ଷରେ ।

ତାପରେ ଏକ ତୋଫାନ...

ରକ୍ତ ମାଂସର ମଣିଷ ଦେହରେ ଯେଉଁ ଦୁର୍ବଳତା ଥାଏ, ନନ୍ଦତା ଦେହରେ ତାହା ଥିଲା । ସେ କଥା ନିଜେ ନନ୍ଦତା ବୁଝି ପାରି ନ ଥିଲା, ଶ୍ୟାମଳ ବାବୁ ବୁଝିଥିଲେ । ଶ୍ୟାମଳ ବାବୁ ଦୀନବନ୍ଧୁ ବାବୁଙ୍କ ରାଜନୀତିକ ସହକର୍ମୀ । ସେ ଅବଶ୍ୟ ଦ୍ୱାର ଦ୍ୱାର ହୋଇ "ଶୁଭକର୍ମ ପଥେ ଧର ନିର୍ଭୟ ଗାନ" ବା "ସାହୁ ସହି ନ ପାରୁ ଆଜ" ଗୀତ ବୋଲି ଚାନ୍ଦା ମାଗୁ ନ ଥିଲେ । ସେ ଥିଲେ କର୍ମୀ ବା କର୍ମିଣୀ ସଂଗ୍ରହ କରି ଆଣିବା ଦାୟିତ୍ୱରେ । ଇଣ୍ଟେଲେକ୍‌ଚୁଅଲ କଣ୍ଟାକ୍ଟ ବା ବୌଦ୍ଧିକ ସମ୍ପର୍କ ରକ୍ଷା ଯାହାକୁ କୁହାଯାଏ । ବାମପନ୍ଥୀ ଦଳମାନଙ୍କର ଭାଷାରେ ଏଇଟା ଗୋଟାଏ "ରିକ୍ରୁଟ୍‌ମେଣ୍ଟ" ବ୍ୟବସ୍ଥାର ଏକ ଉତ୍କୃଷ୍ଟ ପନ୍ଥା । ହାତରେ ଥୋଡ଼େ ପାର୍ଟି ପବ୍ଲିକେଶନ ଧରି ପ୍ରଫେସର, ଓକିଲ, ଡାକ୍ତରମାନଙ୍କ ଘରକୁ ଯିବା, ସେମାନଙ୍କୁ ନାନାଅଡ଼ୁ ନାନା କଥା କହି ପାର୍ଟିକୁ ସିଧା ସାହାଯ୍ୟ କରନ୍ତୁ ପଛେ ପରୋକ୍ଷ ଭାବରେ ସାହାଯ୍ୟ କର ବୋଲି କହିବା, ବହି ବିକ୍ରୀ କରି ବହିର ମୂଲ୍ୟ ସାଙ୍ଗକୁ ଅଧିକ କିଛିଟା ଚାନ୍ଦା ଆଣିବା; ଆଲୋଚନା ଚଳାଉଥିଲେ, ଧୀରେ ଧୀରେ ଆଲୋଚନା ନକରି ବଡ ଘାଟିରେ କହିବା ଫଳରେ ଘରେ ଅଧ୍ୟାପକ, ଓକିଲ ବା ଡାକ୍ତରମାନଙ୍କ ଶିକ୍ଷିତା ଝିଅ ବା ଭଉଣୀମାନଙ୍କ କାନରେ ପାର୍ଟିର ବାର୍ତ୍ତା ପହଞ୍ଚାଇବା ହେଲା ଏହି ବୌଦ୍ଧିକ ସଂପର୍କରକ୍ଷାର ମୂଳମନ୍ତ୍ର ।

ପାର୍ଟି ନେତାମାନଙ୍କ ମତରେ ଅଧିକ ଝିଅଙ୍କୁ ସଂଗ୍ରହ କରି ଆଣିପାରିବାଟା ହେଉଛି ବଡ଼ ବାହାଦୁରୀ । ଏହିଭଳି ଆଲୋଚନା-

ଦ୍ୱାରା ଯଦି କୌଣସି ଝିଅ ଆଲୋଚନା ପ୍ରତି କର୍ଣ୍ଣପାତ କରୁଛି ବୋଲି ଜାଣି ପାରିବ, ତାହାହେଲେ ତାକୁ ଯେ କୌଣସିମତେ ପାଠରଙ୍କକୁ ଟାଣି ଆଣିବାର ବ୍ୟବସ୍ଥା କରିଯିବା ଉଚିତ । କୌଣସି ଝିଅ ଯଦି ନାଚ ଗୀତ ଜାଣୁଥାଏ ତ ତା ପ୍ରତି ପ୍ରଥମେ ନଜର ଦିଆଯିବା ଦରକାର । କାରଣ ନାଚ ଗୀତ ଜରିଆରେ ଯେତିକି ଶ୍ରଦ୍ଧା ଅର୍ଜନ ହୋଇପାରେ, ଅନ୍ୟ କୌଣସି ଜରିଆରେ ତାହା ସମ୍ଭବ ନୁହେଁ । ସତର ଅଠର ବର୍ଷ ବୟସର ଝିଅଙ୍କୁ ପାର୍ଟି ପ୍ରତି ଆକୃଷ୍ଟ କରିବା ସହଜ । ଏଇ ବୟସଟାରେ ସେମାନେ ସ୍ୱାଧୀନ ଭାବରେ ପୁଅ ପିଲାଙ୍କ ସହିତ ମିଶିବାପାଇଁ ଇଚ୍ଛା କରି ଥାଆନ୍ତି ଏବଂ ପାର୍ଟି ଜରିଆରେ ଏହି ମିଶଣଟା ଅତି ଗୌରବମୟ । ସିଏହେଲେ କହିବ, ଝିଅଟା ଦେଶପାଇଁ ଖଟୁଛି ।

ଶ୍ୟାମଳବାବୁ ଏଇ ଦାୟିତ୍ୱରେ ଥିଲେ··· ।

ବିଭିନ୍ନ ଜାଗାରେ ଇଣ୍ଟେଲେକ୍‌ଚୁଆଲ କଣ୍ଟାକ୍‌ଟ ସାରି କ୍ଲାନ୍ତ ଶ୍ରାନ୍ତ ହୋଇପଡ଼ିଲେ, ଦୀନବନ୍ଧୁ ଏବେ ଘରେ ନାଇଁ ଜାଣି ତାଙ୍କର ଘରେ ଟିକିଏ ବିଶ୍ରାମ ନେବାକୁ ଚାଲି ଆସନ୍ତି । ନନ୍ଦିତାକୁ ସେ ଯେଉଁ ବହିସବୁ ଦିଅନ୍ତି, ସେ ବହିର ପ୍ରଥମ ପୃଷ୍ଠାରେ "ସେ ତାଙ୍କର ପଣତକୁ ଟାଣି ଧରିଲେ—ନାୟିକାର ଓଠ ଦୁଇଟି ନାୟକଙ୍କୁ ଭାରି ଭଲ ଲାଗେ" ଏଇଭଳି ସବୁ କଥା ଲେଖାଥାଏ । ଅନ୍ୟ ସ୍ଥାନମାନଙ୍କରେ ସିନା ସେ ବଡ଼ ପାଟିରେ ଆଲୋଚନା କରନ୍ତି, ଏ ଘରେ କିନ୍ତୁ ଅତି ଧୀରେ ଧୀରେ ମୃଦୁ କଣ୍ଠରେ ଦରଦଦିଆ ଭାଷାରେ ଆଳାପ କରନ୍ତି । ଶାସ୍ତ୍ରୀୟ ସଂଗୀତର ଆଳାପ ପରି ଏହା ବହୁବାଟ ଲମ୍ବିଯାଏ । ତାଳ, ଲୟ, ପରେ ମଝିମଝିରେ ସେ ତାନ ଛୁଣ୍ଡାନ୍ତି ଅତି ସୂକ୍ଷ୍ମ ଭାବରେ । ସେ ତାନ ନନ୍ଦିତାହିଁ ବୁଝେ । ଦୀନବନ୍ଧୁ ବାବୁ ଘରକୁ ଫେରିଲା ବେଳକୁ ଠିକକ ଆଗରୁ ଏ ଘରେ ତାନ ଛୁଣ୍ଡୁଥିଲା ବୋଲି ଜାଣିବାଭଳି କୌଣସି ଚିହ୍ନ ବି ଦେଖିବାକୁ ପାଆନ୍ତି ନାହିଁ । ଶ୍ୟାମଳକୁ କହନ୍ତି—କିରେ ଶ୍ୟାମଳ ଆଜି କେତେଜଣଙ୍କ ସାଥିରେ କଂଟାକ୍ଟ ହେଲା ?

ଶ୍ୟାମଳବାବୁ ଡାକିବା ଦିଅନ୍ତି—ଗୁରୁବାବୁ, ସତ୍ୟବାଦୀ ବାବୁ, ନେତ୍ରାନନ୍ଦ ବାବୁ, ବ୍ରହ୍ମାନନ୍ଦ ବାବୁ, ନୀଳମଣି ବୋଷ, କାନ୍ତବାବୁ, ବେଲାରାଣୀ ଧୀର, ରାଧାଭୂଷଣ ଗଡ଼ନାୟକ ଆଦି ବହୁତ ନାଁ ।

ଦୀନବନ୍ଧୁ ବାବୁ କହନ୍ତି—ପ୍ରତିଦିନ ତ ଥୋଡ଼େ ଥୋଡ଼େ ନାଁ କହୁଚ, କାହିଁ ଜଣେହେଲେ ତ ତୋ କହିବା ଲୋକଙ୍କ ମଧ୍ୟରୁ କିଂବା ତାଙ୍କ ଘରୁ 'ପାଠକନ୍ଦ'କୁ ଆସୁ ନାହାନ୍ତି ।

ଶ୍ୟାମଳ ବାବୁ ଜବାବ ଦିଅନ୍ତି—ବୁଝିଲ, ଏଇ ତ ଦରବୃତ୍ତିଟା ଗୀତ ବୋଲି ଝିଅଟାର ଗୁଣ୍ଡା ଅସୂଲ କରିବା ନୁହେଁ । ବନସ୍ତୀ ପକେଇବ—ଯଦି ବୋହି, ଭକୁଡ଼ି ହେଇ ପାଞ୍ଚ ଦଶ ଟେରଟା ନ ଅସନ୍ତି, ତାହାହେଲେ ଲାଭ କ'ଣ ? ବନସ୍ତୀ ପଢ଼ୁଚ, ସୋଲ ବୁଡ଼ୁ, ତେବେ ଯାଇ ସିନା ଉଠେଇବ ! ମଞ୍ଚରୁ ତରବରରେ ଝିଙ୍କି ଦେଲେ ଥରକୁ ଥର କେଞ୍ଚୁଆ ଗୁଣ୍ଡିବାଟା ହିଁ ସାର ହେବ । ଆଜି ଯେଉଁ ତନୁଜା, ସ୍ୱର୍ଣ୍ଣପ୍ରଭା ତୋ ସାଙ୍ଗରେ ଗୀତ ବୋଲି ବୋଲି ବୁଲୁଚନ୍ତି, ତାଙ୍କୁ କିଏ ଆଣିଲା ? ତାଙ୍କୁ ଆଣିବାକୁ କେତେଦିନ ଲାଗିଚି ଜାଣିଚୁ ? ଖାଲି ତ ଆଣିଲି ନାହିଁ, ତାଙ୍କ ଘରେ ବି ଗୃହଜଣ କର୍ମୀଙ୍କ ତିନି ଗୃହବର୍ଷର ଖାଦ୍ୟପେୟର ମଧ୍ୟ ବ୍ୟବସ୍ଥା କରିଦେଇ ଆସିଚି । ହୃଷୀକେଶ ତାଙ୍କ ଘରେ ଗଣ୍ଡେ ଖାଇବାକୁ ପାଇଲା ବୋଲି ଆଜି ପଢ଼ିପାରୁଚି ଏବଂ ପାର୍ଟିରେ କାମ କରି ପାରୁଚି ? ରମେଶଟା ହାତରେ, ଜାଣିଛ ତ ଆଜି ସମଗ୍ର କଲେଜ ୟୁନିୟନଟା । ଗତବର୍ଷ ସେକ୍ରେଟେରୀ, ଏ ବର୍ଷ ପ୍ରେସିଡେଣ୍ଟ । ମହିଳା କଲେଜଟାରେ ଯଦି ଏମିତି ଜଣେ ଦିଜଣ ରଖିଦେଇ ପାରନ୍ତି ନା, ଦେଖନ୍ତୁ ପାଞ୍ଚଟା ବର୍ଷଭିତରେ ମନ୍ତ୍ରୀମଣ୍ଡଳ ଦଖଲ କରି ଯାଆନ୍ତା ।

ଦୀନବନ୍ଧୁ ନବାବ, ନିରୁତ୍ତର ।

ଶ୍ୟାମଳ ତାଚ୍ଛଲ୍ୟ କରି କହେ, ବୁଝିଲୁ ଦୀନବନ୍ଧୁ ! ତୋଭଳି ସ୍ୱାର୍ଥପର, ରକ୍ଷଣଶୀଳ ପିଲାର ଏ ପାର୍ଟିରେ ରହିବାର କୌଣସି ଯୋଗ୍ୟତା ନାହିଁ । ଆଜିକାଲି ମନ୍ତ୍ରୀ, ନେତା, ଭୂଦାନ କର୍ମୀମାନେ ଯେଉଁଭଳି ପିଲାଙ୍କୁ ମୌଳିକ ଶିକ୍ଷା ଦିଅ ବୋଲି ସଭାସମିତିରେ ଗର୍ଜନ ତର୍ଜନ କରି ଭାଷଣ ଦେଉଚନ୍ତି ଏବଂ ନିଜ ପିଲାଙ୍କୁ କନ୍‌ଭେଣ୍ଟରେ ନେଇ ପଢ଼ାଉଚନ୍ତି, ତୁ ବି ସେଇମିତି କାରବାର କରୁଚୁ । କରୁନୁ ? ଏଇ ନନ୍ଦତା—ତୋର ନିଜ ଭଉଣୀ, ସୁଶିକ୍ଷିତା, ସଙ୍ଗୀତ କଥା ତୋଠୁ ଟିକିଏ ଜାଣେ । କାହିଁ ଦିନେ ତ ତୁ ତାକୁ 'ପାଠଚକ୍ର'କୁ ନେଇ ନାହୁଁ ? ସେ କୁଆଡ଼େ ସ୍କୁଲ୍‌ରେ ପଢ଼ିଲାବେଳେ, ଏପରିକି ଫାଷ୍ଟଇଅରବେଳେ ବି ନାଚୁଥିଲା, ମେଡ଼ାଲ ପାଉଥିଲା, ତୁ କୁଆଡ଼େ ତାକୁ ବନ୍ଦ କରି ଦେଲୁ । ଅଥଚ ତୁ ମତେ ମାସେ ହେଲା ଲଗେଇଚୁ ଊର୍ମିଳାକୁ ପାର୍ଟି ଭିତରକୁ ଆଣିବାକୁ । କାହିଁକି ? ସେ ନାଚେ ବୋଲି ତ ? ଗୀତ ତ ଗାଇ ଜାଣେନା, ବକ୍ତୃତା ଦେବାକୁ ପଛଘୁଞ୍ଚା, ଲାଜକୁଳି ଯେ କହିଲେ ନ ସରେ; ତାହାହେଲେ ଆଜି କୋଉଥିପାଇଁ କହ ? ତୁଚ୍ଛା ହେଇ ଠିଆ ହେଇଚୁ ଯେ ......

ଦୀନବନ୍ଧୁ ସେଇମିତି ନୀରବ, ନିର୍ବାକ, ନିରୁତ୍ତର ।

ତାଙ୍କ ମନରେ ମୁହୂର୍ତ୍ତିକ ଭିତରେ କେତେ ଯେ ଚିନ୍ତା ସୃଷ୍ଟି ହୋଇଯାଏ, ସେ ନିଜେ କଳନା କରି ପାରନ୍ତି ନା । ନନ୍ଦତା......ଅତି ଅଲିଅଳ ଭଉଣୀ ନନ୍ଦତା...ଜୀବନରେ ସବୁ ଧକ୍କା ସହିବା ପାଇଁ ସେ ପ୍ରସ୍ତୁତ; କିନ୍ତୁ ସେ ଖାଲି ଚାହାନ୍ତି ନନ୍ଦତା ସୁଖରେ ରହୁ । ଏହି କେଇ ବର୍ଷ ମଧ୍ୟରେ ସେ ନନ୍ଦତାର ଶୈଶବ ଓ କୈଶୋରକୁ ଦେଖିଚନ୍ତି......ଯୌବନଟା ଆସିଲା ବେଳକୁ ସେ ଅନୁଭବ କରୁଛନ୍ତି ସେ ଯିମିତି ଅଜ୍ଞାତ ଭାବରେ ଦୂରେଇ ଦୂରେଇ ଯାଉଚନ୍ତି ତା'ଠୁ । ତା ମନ ଉପରେ ତାଙ୍କର କୌଣସି ଅଧିକାର ନାହିଁ । ଏବେ ବି ସେ ଏକାଥାଳିରେ

ଏକା କଂସାରେ ବସି ନନ୍ଦତା ସହୃତ ଭାତ ଖାଉଚନ୍ତି, ତଥାପି ସେ ବହୁ ଦୂରରେ ।

ନାଚ ନାଁ ଧରିଲେ ତାଙ୍କ ରକ୍ତ ତାତି ଉଠେ । ଜାତିର ସଂସ୍କୃତି ବୁଡି ଯାଉଚି, କଳାକାରମାନେ ହା ଅନ୍ନ, ହା ଅନ୍ନ ହୋଇ ବୁଲୁଚନ୍ତି, ତାଙ୍କୁ ଉଦ୍ଧାର କରିବା, ସେମାନଙ୍କ ପେଟରେ ଦାନା ଦେବାପାଇଁ ତ ସେ ସେଦିନ କଳାନିକେତନ ବୋଲି ଘର ଆଗରେ ଗୋଟେ ଏ ସାଇନ ବୋର୍ଡ ମାରି ନାଚକ୍ଲାସ ଆରମ୍ଭ କରିଥିଲେ । ପ୍ରଥମ କରି ନାଚ ଶିଖିଲା ନନ୍ଦତା । ସେତେବେଳେ ସେ ଥିଲା କିଶୋରୀ—ତା ନୃତ୍ୟର ଭଙ୍ଗୀରେ ମନ୍ତ୍ରୀ ଖୁସିହେଲେ, କୋଳ କଲେ, ଚୁମା ଦେଲେ, ତାଙ୍କୁ ପାଖରେ ବସେଇ ଫଟୋ ଉଠେଇଲେ, ଦର୍ଶକମାନେ ତାଳି ମାରିଲେ, ଖବର କାଗଜରେ ଫଟୋ ଛପା ହେଲା, ଗୃହଅଡ଼େ ନନ୍ଦତା ନନ୍ଦତା ବୋଲି ହୁରି-ପଡ଼ିଲା···କିନ୍ତୁ ସେଇ ମାଷ୍ଟ୍ରଜଣଙ୍କ ପ୍ରଲୁବ୍ଧ ଆଖିରେ ନନ୍ଦତା କ୍ରମଶଃ ଛନ୍ଦାୟିତ ହେବାକୁ ଲାଗିଲା । ଅପରିଣତା, ଅପ୍ରାପ୍ତ ବୟସ୍କା, ଅପରିପକ୍ୱା କିଶୋରୀ ନନ୍ଦା—ସେଦିନ ଅତି ଜୋରରେ ପାଟିକଲା ବୋଲି ସିନା—ନଇଲେ ତା ଅବସ୍ଥା କ'ଣ ହେଇ ଥାଆନ୍ତା ?

ଶ୍ୟାମଳ ମୁହଁରେ ପୁଣି ·ସେହି ନାଚର ପ୍ରସ୍ତାବ—କିନ୍ତୁ ସେତେବେଳେ ଥିଲା ସଂସ୍କୃତିର ପୁନରୁଦ୍ଧାର ପାଇଁ···ଏବେ ପାର୍ଟି ପାଇଁ···

ଦୀନବନ୍ଧୁ ଦାସେ ଥକା ମାରି ବସିପଡ଼ିଲେ ଚୌକି ଉପରେ । କହିଲେ, ତୁ ଯା ଶ୍ୟାମଳ । ବୁଲି ବୁଲି ହାଲିଆ ଲାଗୁଚି, ଟିକିଏ ବିଶ୍ରାମ ନିଏ । ଏହିଯଣି ତନୁଜା ଓ ସ୍ୱର୍ଣ୍ଣପ୍ରଭା ପହଞ୍ଚିବେ । ଆଉ ସାହିଟା ସାରିବାକୁ ହବ । ସମ୍ମିଳନୀ ଆଉ ଦଶଟି ଦିନ ରହିଲା । ଦେଲୁ ସେଥିରୁ କିଛିଟା ବହି, ଅଫିସରେ ମୋ ନାଁରେ ଛିପି ଦେଇଥିବୁ । ଗୃହଜାବାବୁଙ୍କ ଝିଅ ମାଗିଥିଲା । ସରଯାଇଥିଲା ବୋଲି ଦେଇ ପାରିନି ।

ଶ୍ୟାମଳବାବୁ ବହି କେତୋଟି ଦେଇ ଚାଲିଗଲେ । ନନ୍ଦା ଆସି କହିଲା—ଭାଇ, ତୁମେ ଭାରି ଅବଶ ଦେଖାଯାଉଚ, ଖାଇପିଇ ଶୋଇପଡ଼ । ତନୁଜା, ସ୍ୱର୍ଣ୍ଣପ୍ରଭା ଆସନ୍ତୁ, ମୁଁ ଯିବି ଚାନ୍ଦା ଅସୁଲ କରିବାପାଇଁ ।

ଶ୍ୟାମଳବାବୁ ବାହୁଡ଼ି ଆସି କହିଲେ, ଭଲ ପ୍ରସ୍ତାବ··· । ଦନୁ, ପ୍ରକୃତରେ ତୁ ହାଲିଆ ହେଇ ପଡ଼ିଚୁ । ଆଜି ପୁଣି ରାତି ଅନିଦ୍ରା ହେଇ, ସେକ୍ରେଟେରୀ ରିପୋର୍ଟ ଫେଆର କରିବାକୁ ପଡ଼ିବ । ତୁ ଶୁଅ···ନନ୍ଦା ଯାଉ ଅସ୍ତେ ଅସ୍ତେ ଇମିତି ନ ଗଲେ ତା ଲାଜ ଭାଙ୍ଗିବନି···ମୁଁ ଯାଉଚି ଡୁବି ତବଲା, ହାରମୋନିୟମ୍ ଚାନ୍ଦା କରିବା ପାଇଁ । ଭାବୁଚି, କାଲିଠୁ ନାଚ କ୍ଲାସଟା ଆରମ୍ଭ କରିଦେବା । ନନ୍ଦାକୁ ଦୂରକୁ ଯିବାକୁ ପଡ଼ିବନି । ତୋର ଯଦି କୌଣସି ଆପତ୍ତି ନ ଥାଏ, ଏହି ଘରେ କରିବା । ଆମର ପୂର୍ଣ୍ଣଦାକୁ ସବୁବିଦ୍ୟା ମାଲୁମ । ନାଚ ଜାଣେ, ଗୀତ ଜାଣେ, ବଜେଇ ଜାଣେ, କାରିକେଚର ବି ଜାଣେ । ଆମର ତ ସାତ ଆଠ ଜଣ ଝିଅ ଅଛନ୍ତି, ସମସ୍ତଙ୍କୁ ନେଇ ପାର୍ଟି ଲାଇନରେ ଗୋଟାଏ ନୃତ୍ୟନାଟ୍ୟ କରିବା ବୋଲି ଭାବୁଚି । ଠିକ ସମ୍ମିଳନୀ ପରେ ପରେ ଭେରାଇଟି-ସୋ ଆରମ୍ଭ ହେବ । ଏ ପ୍ରଚାର କଲେ ଦେଖିବୁ ସଭାରେ ହଜାର ହଜାର ଲୋକ ହେବେ । ଲୋକେ ଦଳର ନୀତି କଥା ଶୁଣନ୍ତୁ ବା ନ ଶୁଣନ୍ତୁ, ଅନୁପ୍ରାଣିତ ହୁଅନ୍ତୁ ବା ନ ହୁଅନ୍ତୁ, ଏତେ ଲୋକ ହେଇଥିଲେ ବୋଲି ଅନ୍ତତଃ ପ୍ରଚାର ତ ହେଇ ପାରିବ ! ପ୍ରଚାରହିଁ ପାର୍ଟିର ପ୍ରସାରକୁ ଅଧିକ ସାହାଯ୍ୟ କରେ ।

ଏତିକି କହୁ କହୁ ଶ୍ୟାମଳ ମନେ ମନେ ବିଷୟବସ୍ତୁ ମଧ୍ୟ ଠିକ କରି ନେଇଥିଲା; କହିଲା—ବୁଝିଲୁ ଦନୁ, ନୃତ୍ୟନାଟ୍ୟର ନାଁ ଦେବା "ରଜା ଓ ପ୍ରଜା" । ନନ୍ଦତା ହେବ ରାଜଜେମା ।

ନୃତ୍ୟନାଟ୍ୟରେ ନନ୍ଦତା ରାଜକେମା ହେଲା କି ବର୍ଣ୍ଣ ହେଲା କେଜାଣି, ସେ ଜାଣିବାକୁ ଅବକାଶ ପାଇ ନ ଥିଲେ । କାରଣ ସମ୍ମିଳନୀ ହେବାର କୁଇଦନ ପୂର୍ବରୁ ଏକ ରାଜନୀତକ କୁରଭସନ୍ଧରେ ରାଜଗାଦିରେ ବସିଥିବା ଦଳ କି ଏକ ଅନ୍ଦୋଳନର ନେତା ଥିଲେ ବୋଲି ଅଭିଯୁକ୍ତ କରି ଦୀନବନ୍ଧୁଙ୍କୁ ଜେଲରେ ଭର୍ତ୍ତି କରି ଦେଇଥିଲେ । ଏ ଜେଲଦଣ୍ଡର ବିଚାର ହୁଏ ନା, କାରଣ ଯ୍ୱାର ନାଁ ଅଟକବନ୍ଦୀ ଅଇନ । ସରକାରଙ୍କ ଶେଷାସ୍ତ୍ର ।

ଦୁଇବର୍ଷ ପରେ ସେ ଯେତେବେଳେ ବନ୍ଦୀଗୃହରୁ ଖଲାସ ହେଲେ,ସେତେବେଳେ ସେ ଜାଣି ପାରିଲେ, ଶ୍ୟାମଳ ଦଳ ଛାଡ଼ି ଦେଇ ସରକାରୀ ଚାକରୀ କରିଛି—ବିବାହ କରିଛି ତାଙ୍କ ଭଉଣୀ ନନ୍ଦାକୁ । ଶେଷରେ ଶ୍ୟାମଳ ତାର ଜୀବନନାଟକରେ ତାକୁ ରାଜରାଣୀ କରି ନେଇଛି ।

ପାର୍ଟିରେ ଥିଲାବେଳେ ଲୋକେ ପାର୍ଟି ପତାକାକୁ ଛୁଇଁ ଶପଥ କରି ଥାଅନ୍ତି—ଜୀବନରେ ସରକାରୀ ଚାକରୀ କରିବନି, ପାର୍ଟିହିଁ ମୋର ଜୀବନ, ପାର୍ଟିର ନିର୍ଦ୍ଦେଶ ଓ ଆଦର୍ଶରେ ମୁଁ ମୋର ଜୀବନକୁ ପରିଚାଳିତ କରିବି···। ସେ ସବୁ କେବଳ ଏକ ମୁହୂର୍ତ୍ତି ବା କେଇଟି ବର୍ଷର ଭାବପ୍ରବଣତାରେ ହୋଇଯାଏ···ତାପରେ ସେଇମାନେହିଁ ସବୁଠାରୁ ସରକାରଙ୍କ ବେଶୀ ଅନୁଗତ ଚାକର ହୋଇ ଥାଅନ୍ତି । ଯେଉଁ ମନ୍ତ୍ରୀଙ୍କୁ ଦେଖିଲେ, ସେମାନଙ୍କ ବକ୍ତୃତାରେ ଗୁଣ୍ଡାଏ ଲୋକଙ୍କୁ ରୁଣ୍ଡ କରି, ଲୋକଙ୍କୁ ବସେଇ ବକିବାକୁ ଇଚ୍ଛା ହୁଏ, ସେଇ ମନ୍ତ୍ରୀଙ୍କ ପ୍ରାଇଭେଟ ସେକ୍ରେଟେରୀ ସେଇମାନେହିଁ ହୋଇ ଥାଅନ୍ତି ।

ତେଣୁ ଶ୍ୟାମଳ ଯେ ଏକ ମସ୍ତବଡ଼ ଭୁଲ କରିଛି, ଦୋଷଣୀୟ କାମ କରି ପକେଇଛି, ଏକଥା ଦୀନବନ୍ଧୁ ଦାସେ ମନେ କରି ନ ଥିଲେ । ନନ୍ଦା ବି କିଛି ଭୁଲ କରିନି—ଅଯୋଗ୍ୟ

ପାଏକୁ ବାଣ୍ଟୁନ । କେବଳ ତାଙ୍କ ମନରେ ଦୁଃଖ ରହିଲା, ନନ୍ଦା ଖଣ୍ଡିଏ ହେଲେ ଚିଠି ଦେଉନି କି କୁଆଡ଼ିଗଲା ଜଣାଉନି ।

ପରେ ସେ ତାର ଖୋଜଖବର ନେଇଥିଲେ ବହୁତ— ଥରେ ସେ ଗ୍ରାଣ୍ଡରୋଡ଼ପୁରରେ ଅଛି ବୋଲି ଖବରପାଇ ସେଇଠିକି ଯାଇଥିଲେ···କିନ୍ତୁ ନିରାଶ ହୋଇ ଫେରି ଆସିଲେ । ଶୁଣିଲେ, ଶ୍ୟାମଳବାବୁ ଗତ ଗୁରୁ ଦିନ ହେଲା କୁଆଡ଼ିକି ବଦଳି ହୋଇ ଯାଇଛନ୍ତି । ସେଇଠୁ ସେ ଶୁଣିଥିଲେ ଯେ ନନ୍ଦାର ଝିଅଟିଏ ହୋଇଛି ବୋଲି ।

ଏହା ଦିବର୍ଷ ତଳର କଥା······

ଦିବର୍ଷ ପରେ ଆଜି ନନ୍ଦା ସହିତ ଦୀନବନ୍ଧୁ ଦାସଙ୍କର ସାକ୍ଷାତ, ଖୁସି ହେବା କଥା ।

ଶେଷରେ କହିରଖେଁ, ଶ୍ୟାମଳବାବୁ ହେଉଛନ୍ତି ସୁନାଙ୍କର ବାବୁଙ୍କର ଭାଇପୁଅ ଅର୍ଥାତ୍ ପୁତୁରା । ସନ୍ତାନ ନ ଥିଲା ବୋଲି ସେ ସ୍ୟାଙ୍କୁ ପୁଅ କରି ନେଇଥିଲେ । ନନ୍ଦା ସହିତ ତାଙ୍କୁର ବାହା ଦେବାପାଇଁ ସେ ସାହାଯ୍ୟ କରୁଥିଲେ ନନ୍ଦା ଆଉ ଦୀନବନ୍ଧୁ ଦାସଙ୍କୁ ।

ଗତ ରାତି ପୂର୍ବରୁ ଅର୍ଥାତ୍ ଦୀନବନ୍ଧୁ ଦାସେ ଓ ସୁସ୍ମିତା ଦେବୀ ଦୁହେଁ ଏକ ଚଉକିରେ ମୁଣ୍ଡଦେଇ ଶୋଇବା ପୂର୍ବରୁ, ସୁସ୍ମିତାଦେବୀ ଦାସଙ୍କଠାରୁ, ହଁ—ତା'ପରେ—ତାପ'ରେ କହି କହି ଏତେ ସଂବାଦ ସଂଗ୍ରହ କରି ନେଇଥିଲେ । ସବୁ ଶୁଣି ସାରିବା ପରେ ରମାଦେବୀ ପଚାରିଲେ, ତାହାହେଲେ ତୁମେ କୁହ, ମୁଁ ତାଙ୍କୁ ଭାଉଜ ବୋଲି ଡାକିବି ନା ସେ ମୋତେ ଡାକିବେ । ଯାହା ହେଲେ ଗୋଟେ ଥିର କରିଦିଅ ।

ଦାସେ କହିଲେ—ଆଜି କେଇଟାଦିନ ଗଲେ ମକର ସଂକ୍ରାନ୍ତି ପଡ଼ିବ, ଭଲ ମକର ଗୁଡ଼ିଆ କରି ପରସ୍ପରକୁ ଦିଅଦେଇ ହୋଇ ମକର ବସିପଡ଼, ଅଡୁଆ ତୁଟିଯିବ । ନଣନ୍ଦ ଭାଉଜରେ ନାନା କଥା ଉଠେ । ମକର ବସିଲେ ଗଲା ।

ଦାସେ ଶୋଇ ପଡ଼ିଲେ ।

ହଠାତ୍ ଟିକକପରେ ରମାଦେବୀ ଉଠି କହିଲେ, କ'ଣ ଶୋଇ ଶୋଇ ନିଦ । ଟିକିଏ ହଲେଇ ଦେଇ କହିଲେ, ଅହେ ଶୁଣୁଚ…? ଦାସେ ଉଠି ପୁଣି ବସିଲେ ।…କ'ଣ ହେଲା ?

—ମକର ବସିଲେ ତ ନୂଆ ଲୁଗା ଟିଏ ଦବାକୁ ପଡ଼ିବ । କହି ଦେବା ସିନା ସହଜ, ତୁଲେଇ ପାରିବ ତ ? ଭଲ ଲୁଗାଟିଏ ହେବା ଦରକାର । ଅନ୍ତତଃ କୋଡ଼ିଏ ପଚିଶି ଟଙ୍କା ନ ହେଲେ ହବନି । ମକର ଯାହା, ସଙ୍ଗାତ ତାହା । ସେଦିନ ପ୍ରମିଳା ସାଙ୍ଗରେ ଦମୟନ୍ତୀ ସଙ୍ଗାତ ବସିଲା—କ'ଣ ଦିଆ ନିଆ ହୋଇଚନ୍ତି ଜାଣ ? ଏଡ଼େ ବଡ଼ ତାଟିଆକରେ ତାଟେ ହବ ଦରବ । ନିଜ ଆଖିରେ ଦେଖିଚି ପରା ! ବନାରଶୀ ଶାଢ଼ୀ, ପାଞ୍ଚଟା ନଡ଼ିଆ, କାଚ ଅଠ ଅଠ ପଟ ପୋଲପଟ, କାନକୁ ଝୁମ୍ପି । କଜଳ, ସିନ୍ଦୂର, ପାଉଡ଼ର ଡବା । ଗୋଟେ ବାହାଘରର ଯୋଗାଡ଼ ! ଧର ଆମେ ଏତେ ଟଙ୍କା ଦେଇ ପାରିବାନି, ଲୁଗାଖଣ୍ଡେ, ନଡ଼ିଆ ଦିଟା, ଝୁମ୍ପିକି ଯୁଡ଼, ଆଉ ସବୁ ଜିନିଷ ତ ଦେବା ! ପଚିଶ ଟଙ୍କା ହେଲେ ଯାଇ ହବ । ତା ଛଡ଼ା ତାଙ୍କ ନିମିଟି ପେଇଁ—

ଦାସଙ୍କ ଆଖିରେ ଯାହା ବା ଟିକିଏ ନିଦ ଥିଲା, ସେତକକୁ ରମାଦେବୀ ବେଶ କଥାର ପାଣିଛିଟା ଦେଇ ନିଭେଇ ଦେଲେ । ଦାସଙ୍କ ଉତ୍ସାସ ମୁଣ୍ଡଟା ଭିର ଭିର ହୋଇ ଆସିଲା । କଥାକୁ ଏଡ଼େଇ ଦେବା ପାଇଁ କହିଲେ—ସେମିତି ମକର ବସିବାପାଇଁ ମୁଁ କହୁନି । ଏତେ ଦିଆନିଆ ହେଲେ, ସଂପର୍କଟା ଭଲ ରହେ ନା । ଧର, ତୁମେ ଏତେ ଜିନିଷ ଦବ, ତୁମେ ତ କ'ଣ କ'ଣ ଦଉଚ ସେ ଜାଣି ନଥିବେ । ଯଦି ତୁମ ଜିନିଷଠୁ ସେ ଦେଇଥିବା ଜିନିଷ କେଉଁ ଗୁଣରେ ନିଉନ ହୋଇଯାଏ, ତାହାହେଲେ ତୁମ ମନ ଖରାପ, ତାଙ୍କ ମନ ଖରାପ । ଦେଖଣାହାରିଏ କହିବେ, କି ମକର ହୋଇଚି କଲେ, ଶାଢ଼ୀ ଦେଇଚି ଯେ ଏତେ ମୋଟ, ଅଖା ନା ଲୁଗା ମ ! ତେଣୁ ମକର ବସିବାରେ ପଇସାପଇର କାରବାର ଠିକ୍ ନୁହେଁ ।

ତୁମ ଅଡ଼େ କ'ଣ କେଜାଣି, ଅମ ଅଡ଼େ ଏ ସବୁ ପ୍ରଥା ନାହିଁ । ମକରଗୃକଳ ଚିକଏ ତୁମେ ତାଙ୍କ ପାଟିରେ ପକେଇ ଦେଲ, ସେ ଟିକଏ ତୁମ ପାଟିରେ ପକେଇ ଦେଲେ, ତା'ପରେ ମକର ମକର ଡକାଡକି ଗୃଲ୍ଲ । କେହ୍ନ କାହା ନାଁ ନ ଧରଲେ ହେଲ୍ଲ । ଯଦ ଏଥିରେ ମନ ନ ପାଇଚ, ତାହାହେଲେ ମକରପ୍ରସ୍ତାବକୁ ନାକଚ କର । କାଲ୍ ନନ୍ଦାର ସାର୍ଟିଫିକେଟ ଅଣ, ତୁମ ସାର୍ଟିଫିକେଟ ମଧ୍ୟ ଅଣିବ—ଦେଖିବା କା ବୟସ କେତେ, କିଏ ବଡ଼, କିଏ ସାନ । ତୁମେ ତ ତାଠୁ ବୟସରେ ବଡ଼ ବୋଲି ସବୁବେଳେ କହ୍ନୁଅ, ଦେଖିବା । ଯଦ ବଡ଼ ହୋଇଥାଅ, ତାହାହେଲେ ସେ ତୁମକୁ ନାଁ ନଇଲେ ଅପା ବୋଲି ଡାକିବ । କ'ଣ, ହେଲ ତ ?

ନନ୍ଦତାଦେବୀଙ୍କ କୌଣସି ପ୍ରସ୍ତାବରେ ମନ ପାଇଲ୍ଲ ନାହିଁ । ସେ ଶୋଇଲ୍ଲବେଳକୁ କହ୍ନଲେ—ସେ ପଛେ ମତେ ଭାଉଜ ବୋଲି ଡାକନ୍ତୁ, ମୁଁ କନ୍ତୁ ତାଙ୍କୁ ଭାଉଜ ବୋଲି ଡାକିବି । ଅଭ୍ୟାସ ହେଇଗଲ୍ଲଣି, ଏଇଲେ ମକର ବସିଲେ ହବନ । ଦଦ, ଅପା, ନାଁ ସଂବୋଧନ ସାତ ଭଉଣୀଙ୍କଠୁ ଶୁଣିବା ପରେ ଅଉ ଶୁଣିବାକୁ ଇଚ୍ଛା ହେଉନ ।

ସେଯୁା ହେଲ, ଇଏ ଭାଉଜ ବୋଲି ଡାକଲେ ସିଏ ଓଁ କହନ୍ତି, ସିଏ ଯୁାଙ୍କୁ ଭାଉଜ ବୋଲି ଡାକଲେ ଇଏ ଓଁ କହନ୍ତି । ଶେଷରେ 'ଓଁ' ଶବ୍ଦଟି ହିଁ କମନ୍ ରହ୍ନଲ୍ଲ ।

ନନ୍ଦା ନଇତ ପୂଜା'ସ୍ନାହାତରେ ଠିକ ଦୀନବନ୍ଧୁ ବାବୁ ଖାଇବାବେଳକୁ ତରକାରି ପଟେଇ ଦଅନ୍ତି···ରନାଦେବୀଙ୍କ ରନ୍ଧା ତରକାରିରୁ ଟିକଏ ପାଟିରେ ଲଗଇ ଲଗଇ, ତାଙ୍କ ଘରର ତରକାରି ଆଗରେ ଅସି ଥୁଆ ହେଇଯାଏ । ଘର

ଡବକାରକୁ ଅଢ଼େଇ ଦେଲ, ପର ଘର ଡବକାରକୁ ପୋଛୁପାଛୁ ଖାଇ ପକାନ୍ତି ବୋଲି ଇନାଦେବୀଙ୍କ ବଡ଼ ରାଗ । ଯେତେ ଭଲ କରି କଲେ ମଧ୍ୟ ଅଜ ଡରକାରିଟା ଭଲ ହେଇଚ ବୋଲି ଦନେ ଦାସଙ୍କ ତୁଣ୍ଡରୁ ପ୍ରଶଂସା ଶୁଣିବାକୁ ମିଳେନ । ଅଜ ଡରକାରିଟା ସ୍ୱାଗ ହେଇଗଲ, କାଲି ଲୁଣି ହୋଇଗଲ, ମସଲାମସଲି ବହୁତ ହେଇଗଲ, ହଳଦୀ କମ ଦେଇଥିଲେ ହଳଦୀ ହଳଦୀ ଲଗି ନ ଥାନ୍ତା, ଡାଲିଟା ଭଲ କରି ସିଝିଲାନି, ପାଣିଚଅ ପାଣିଚଅ ଲଗୁଚ; ତେଲ ବେଶି ହୋଇଗଲ, ଏଗୁଡ଼ିକ ବଡ ଭଲଅ ଦେଖାଯାଉଚ, ଭଜାଟା ଠିକ ଏ କଡ଼କଡ଼ଅ ହୋଇ-ଥାଅନ୍ତା…ପ୍ରତଦନ ଇମିତ ଗୋଟିଏ ଗୋଟିଏ ମତାମତ ଦାସଙ୍କ ତୁଣ୍ଡରୁ ବାହାରିପଡ଼େ । ଇନାଦେବୀଙ୍କଠାରେ ଏହାର ପ୍ରତକ୍ରିୟା କ'ଣ ହେଉଥିବ ସେ ଅଦୌ କଳ୍ପନା କରି ପାରନ୍ତିନ । ସେ ଖାଲି ଭାବନ୍ତି—ଇମିତ କହିଲେ, କାଲିକୁ ଠିକ ଏ ଭଲ ହବପରି !

ଦନେ ଦନେ ଏଇକଥା ଭାଳି ଭାଳି ଇନାଦେବୀ ଲୁହ କାନ୍ଦନ୍ତି । ତା'ଙ୍କ ହୃଦପୃଷ୍ଠଟା ଉହଳ ବିକଳ ହେଇଉଠେ । କିନ୍ତୁ ସେ କାନ୍ଦର ସ୍ୱର ନଥାଏ ବୋଲି ଦାସଙ୍କ କର୍ଣ୍ଣଗୋଚର ହୁଏନାହିଁ, ଲୁହ ବାହାରେନ ବୋଲି ଚକ୍ଷୁଗୋଚର ବି ହୋଇ ପାରେ ନା ।

ଠିକ୍ ଏତକବେଳକୁ ଦାସେ ଅଫିସକୁ ବାହାରୁ ବାହାରୁ କହିଦେଇ ଯାଅନ୍ତି, ଗ୍ରିଡ ଫଳ ମୋ ପେଇଁ ରାନ୍ଧିବନି, ଅନ୍ୟଟି ଖାଇବାର ଅଛି । ଗତ ଦନ, ତା ପୂର୍ବଦନ, ଇମିତ ପ୍ରତ୍ୟେକ ଦନ ଯେ ସେ କହିଦେଇ ଯାଇଥାଅନ୍ତି, ଦୀନବନ୍ଧୁ ଦାସଙ୍କ ମନେ ପଡ଼େନ । "ଗ୍ରିଡଫଳ ଖାଇବନି, ଅନ୍ୟଠି ଖାଇବାର ଅଛି" ଏତକ କହିଦେଇ ଯିବାଟା ତାଙ୍କର ଗୋଟାଏ ଅଭ୍ୟାସରେ ପଡ଼ିଯାଇଚ । ଅବଶ୍ୟ ଥରେ ଥରେ ଅନ୍ୟଠି ଖାଇବାର ବ୍ୟବସ୍ଥା ଥାଏ । ଟିପାର୍ଟି, ଭନର ଆଦ ପଡ଼େ । ତା ବୋଲି ଯେ ସବୁଦନେ

ଥାଏ, ତା ନୁହେଁ । ତେଣୁ ଦାସେ ସ୍ତ ଦଣରେ ଘରକୁ ଆସିବାବେଳେ, ନିମନ୍ତ୍ରଣ ନ ଥିଲେ, ପଇସା ଦେଇ ନଚେତ୍ ବାକୀ ଖାତାରେ ପଇସା ଚଢ଼େଇ ଦେଇ ହୋଟେଲରେ ଖାଇ ଦେଇ ଆସନ୍ତି । ନଚେତ୍ କିଛି ନ ଖାଇ ମଧ୍ୟ ଘରେ ପଚାରିଲେ କହନ୍ତି, ଭୂରିଭୋଜନ ହୋଇଛି । ବନାଦେବୀ କୁଅଡ଼େ କମିତି ଗୁଲିଗଲେ ହାଣ୍ଡିଶାଳେ ପଶି ହାଣ୍ଡି ଦରାଣ୍ଡନ୍ତି । ତରତରରେ କିଛିଟା ପାଟିରେ ପକେଇ ଦେଇ ଗ୍ଲାସେ ପାଣି ପିଇ ପକାନ୍ତି । ପରଟା ବା ରୁଟି ହୋଇଥିଲେ, ବନାଦେବୀ ପରେ ଆସି ଗଣନ୍ତି । ଊଣା ପଡ଼ିଗଲେ, ଦାସେ ବରାଡ଼ିଟା ଉପରେ ଗରଗର ହୋଇ, ଡାହାଣୀ ବିରାଡ଼ିଟା, ଘରେ କିଛି ରଖେଇ ଦେଲା ନାହିଁ ବୋଲି କହି ହୁଅନ୍ତି । ଯେଉଁଦିନ ଦାସଙ୍କୁ ଏ ସୁବିଧା ମିଳେନି, ଖାଲି ପେଟରେ ଆଖିଙ୍କ ବୁଜି ଶେଯରେ ପଡ଼ି ରହନ୍ତି, ରାତି ଅଧରେ ଭୋକରେ ପେଟ ଅଜଟୁ ପାଜଟୁ ହେଲେ, ବନା ଦେବୀଙ୍କି ଉଠେଇ କହନ୍ତି, ମୁଢ଼ି ଥିଲା ପରା...

—ଥିଲା ଯେ ଡାଲି ସେତକ ସିପିଗଲା ବୋଲି କୁକୁରକୁ ଦେଇଦେଲି ।

—କଦଳୀ ?

—ଦଟା ଖଣ୍ଡେ ଥିବ, କିନ୍ତୁ ଏତାବେଳକେ ପଚି ।

—ବିସ୍କୁଟ ?

—ଗୁହା ସାଙ୍ଗରେ ସକାଳେ ସବୁତକ ଗିଳି ଦେଲ ପରା !!

ଦାସେ ସବୁ ଜିନଷ ଅଛି କି ନାହିଁ, ଥିଲା ପରା ବୋଲି ପଚାରନ୍ତି କିନ୍ତୁ ଭୋକ ହଉଛି ବୋଲି କହନ୍ତି ନାହିଁ—ଭାର ଲଜ ମାଡ଼େ ତାଙ୍କୁ ।

ଶେଷରେ ଯୁଜ ଉପରେ ଦୃଷ୍ଟି ପଡ଼େ ତାଙ୍କର । ଏଇ ଜିନଷଟା ନିଶ୍ଚୟ ଅଛି । ଗତକାଲି ବନା ଦେବୀ ବରାଦ ଦେଇ-ଥିଲେ, ସେ ଆଣିଚନ୍ତି । ଚିନି, ଘିଅ ବି ଅଛି । ତେଣୁ ବନା

ଦେବୀଙ୍କୁ ଅଜ କିଛି ନ କହି କହନ୍ତି, ତୁମେ ଶୁଅ, ମତେ ନିଦ ଲାଗୁନି, ବସି ପଢ଼ିବି । ନିଦ ଲାଗିଲେ ଶୋଇବି ।

ବନା ଦେବୀ ନ ଶୋଇଲା ଭଳି ଶୁଅନ୍ତି—ଥରେ ଥରେ ଜୋରରେ ଘୁଙ୍ଗୁଡ଼ି ମଧ ମାରନ୍ତି ।

ଇଲେକ୍‌ଟ୍ରି ଷ୍ଟୋଭ ଲଗେଇ ଦାସେ ହାଲୁଆ କରିବାକୁ ଯାଆନ୍ତି । ହାଲୁଆ ରନ୍ଧା ସରେ । ସେତିକିକୁ ବାଡ଼ିଅଡ଼େ ନେଇ ଖାଇ ଖାଇ ଧରାପଡ଼ି ଯାଆନ୍ତି । ବନା ଦେବୀ ସାନ ପାସ୍ ଯିବା ବାହାନାରେ ବାଡ଼ି ଅଡ଼କୁ ମାଡ଼ି ଆସନ୍ତି ଖୁବ୍ ଜୋରରେ ।

ଦାସେ ଖାଇ ଖାଇ ତଣ୍ଟିରେ ଲାଗିଯାଏ । ବନା ଦେବୀ ପାଣି ଗ୍ଲାସେ ଅଣି କହନ୍ତି, ନିଅ ପିଇଦଅ···ଏତେ ଜଲଦ ଜଲଦ ଖାଉଚ କାହିଁକି; ଧୀରେ ଧୀରେ ଖାଅ । ଅଜ କେହି ନାହାନ୍ତି ମ, ମୁଁ ଖାଲି ଅଛି । ଭୋକ ହଉଚି ବୋଲି କହିଥିଲେ କ'ଣ ମୁଣ୍ଡ ତଳକୁ ନଇଁଯାଇ ଥାଆନ୍ତା ? ସେଦିନ ବିସ୍କୁଟଟାକୁ ଚୁଲ୍ଲାଟାରେ ବାଡେଇଲ । ତୁମ ଭଳି ଘରେ ଦିଗୋଡ଼ିଆ ବିରାଡ଼ି ଅଛନ୍ତି ବୋଲି ଜାଣିଥିଲେ···

ତା ଅର ଦିନଠୁ ଦାସେ ଅଜ୍ ରାତି ଝଳା ଖାଇବେ କି ନା କିଛି କହିଲେ ନାହିଁ—ଅଭ୍ୟାସ ଭାଙ୍ଗିବାକୁ ଚେଷ୍ଟା କଲେ ସେ ।

ବନା ଦେବୀ ଅସିଲେ ଖାଇବେ ବୋଲି ନାନା ଜିନଷ ରାନ୍ଧି ଦାସଙ୍କ ଅପେକ୍ଷା କରି କବ ବସି ରହନ୍ତି । ଗୃହିଁ ଗୃହିଁ ତାଙ୍କ ପେଟରୁ ଭୋକ ମରିଯାଏ । ସେ ଅଜ ରାତିଝଳ ଖାଇପାରନ୍ତି ନା । ଦାସଙ୍କ ଭଳି ଭୋକିଲା ପେଟରେ ଶୋଇ ରହିବାକୁ ପଡେ ତାଙ୍କୁ । ଦାସେ କେତେବେଳେ ରାତି ବାର, କେତେବେଳେ ରାତି ଦୁଇରେ ଅସି ଘରେ ପହଞ୍ଚନ୍ତି । କେତେବେଳେ କହନ୍ତି ଖାଇଦେଇ ଅସିଚି, କେତେବେଳେ କହନ୍ତି—ବହୁତ ରାତି ହୋଇଗଲାଣି, ଖାଇଲେ ପେଟ ଖରାପ ହବ । ତା ଅରଦିନ

ବାସି ଦୁଧ ବିରାଡ଼ି ଖାଏ, ବାସି ପରିଠା କୁକୁର ଖାଏ । ଦିନେ ବି ଅସି ରନା ଦେବୀଙ୍କୁ ତୁମେ ଖାଇଚ କି ନା ପଗ୍ଗୃରନ୍ତି ନି ସେ ।

ହଠାତ ସେଦିନ ଦାସଙ୍କର ପିଲାଦିନର କଥା ମନେ ପଡ଼ିଗଲା । ମାଈଁ ତାଙ୍କର କୁଅଡ଼େ ମୁଗପୁଲି କରି ତାଙ୍କୁ ଦିଅନ୍ତି । ଖୁବ ଭଲ ଲାଗେ । ରନାଦେବୀଙ୍କି କହନ୍ତି, ଅଜି ଗ୍ରୁତରେ କରନ୍ତ, ଖାଅନ୍ତେ ।

ଏ ଘରେ ତ ପର୍ବ ପର୍ବାଣୀ ବୋଲି କିଛି ନ ଥାଏ—ତେଣୁ ପିଠାପଣାର ପ୍ରଶ୍ନ ଉଠେ ନା । ଅନେକଙ୍କ ଧାରଣା—ଏଇଟା ଗୋଟାଏ ଖିରସ୍ତାନ ଘର । ଏଭଳି କି ମଙ୍ଗଳା ଠାକୁରାଣୀଙ୍କ ନାଁରେ ଯେଉଁମାନେ ଭିକ ମାଗିବାକୁ ଆସନ୍ତି, ସେମାନଙ୍କୁ ଦାସେ ଖିରସ୍ତାନ ଘର ବୋଲି କହି ଦେଇଥିବାରୁ, ସେମାନେ ଏ ଦୁଆର ସୁଦ୍ଧା ମାଡ଼ନ୍ତି ନାହିଁ । କାହିଁକି ବା ବିଶ୍ବାସ ହେବନି ସେମାନଙ୍କର ? ଗ୍ରୁଲିଚଳନ, କଥାବାର୍ତ୍ତା ଠିକ୍ ସେଇ ବିଧର୍ମୀ ଗୁଡ଼ାଙ୍କପରି । ଏ ଘରର କାଲେଣ୍ଡରରେ ଜାନୁଆରୀ, ଫେବୃଆରୀ ସଣ୍ଡେ, ମଣ୍ଡେ, ଟିଉଜଡ଼େ ଇତ୍ୟାଦି ଲେଖାଥାଏ—ବୈଶାଖ, ଜ୍ୟେଷ୍ଠ, ଅଷାଢ଼, ଶ୍ରାବଣ, ପ୍ରତିପଦ, ଦ୍ଵିତୀୟା, ତୃତୀୟା, ମାସାନ୍ତ, ସଂକ୍ରାନ୍ତି ଆଦି ଲେଖା ନ ଥାଏ । ପଡ଼ଶା ଘରର ଦାଅଁ ଖଟୁଲିରେ ଯେଉଁ ଶାଳଗ୍ରାମ ଥାଏ, ଦାସେ ତାକୁ ଚିକଣିଆ ଗୋଲ ଗାଲ ପଥର ବୋଲି ଭାବି କୁଉଠୁ କେତେବେଳେ ଗୋଟେଇ ଅଣି, ଟେବୁଲରେ ପେପରଓ୍ଵେଇଟ କରି ସଜେଇ ଥାଅନ୍ତି । ଅନ୍ୟ ଘରେ କପାଳରେ ତିଲକ ମାରିବା ପାଇଁ, ଯେଉଁ ଚନ୍ଦନପେଡ଼ି ଥାଏ, ଦାସେ ତାକୁ ମାଗି ଅଣି, ଅନ୍ୟ କାମରେ ଲଗାନ୍ତି ।

ଆର ଘରେ ଗୁରୁବାର ଉଜୁଅଁ ଦିନ ପିଠାପଣାର ଗନ୍ଧ ଆସିଲେ, ଦାସଙ୍କ ଘରେ ଅଈଁଷର ଗନ୍ଧ ବାହାରେ । ରନାଦେବୀ ଏତେବଡ଼ ପାପ କିମିତି କରିବି ବୋଲି ଅଡ଼େଇ ହେଇ ବସିଲେ, ଦାସେ ନାକକୁ ଫୁଲେଇ, ରାଗରେ ଜରଜର ହେଇ,

ସ୍ୱେଷେଭଣାଳରେ ବସି ଲାଜେ ମାଂସ ବାନ୍ଧନ୍ତି । ଘରେ କେହି ନ ଖାଇଲେ, ଦାସେ ସେଗୁଡ଼ାକୁ ଦର୍ଜଲା କରି ନିଃଶେଷ କରି ଦିଅନ୍ତି ।

ତେଣୁ ପୂଜାର ଖବର ଶୁଣି ରତନାଦେବୀଙ୍କ ମନ ଉଲ୍ଲସିତ ହୋଇ ଉଠିଲା । ସଙ୍ଗେ ସଙ୍ଗେ ମୁଗକୁ ବଛୁଲେଇଲେ—ଗ୍ରାମରକୁ ପଠେଇ ଗୁଡ଼ ଅଣିଲେ । ଘରେ ତ ଝିଅ ଅଛୁ । ଆଜି ପୂଜା ହେବ, ଦାସେ ରାତିରେ ପୁଣି ମନ ଖୁସିରେ ଖାଇବେ ! ରତନାଦେବୀଙ୍କ ମନ ଆନନ୍ଦରେ ନାଚ ଉଠିଲା । ଦନ ଗ୍ରାରରୁ ଲାଗିଲେ ଯେ ପୂଜା ଭଜା ଶେଷ ହେଲା ସଂଧ୍ୟା ଛଅରେ । ଦାସେ କହିଥିଲେ, ଅଜି ସେ ପେଟ ଖାଲିକରି ଅସିବେ···ଯିଏ ଯାହା ଯାଚୁ କିଛି ଖାଇବେନି । ସଅଳ ମଧ୍ୟ ଚ୍ଛୁଲି ଅସିବେ ।

ରତନାବୋଉ ଅସି କହନ୍ତି, କଲେ ଝିଅ, ଅଜି କ'ଣ କରୁଚୁ ?

—ନାହିଁ ନାନୀ, ଅଜି କିଛି ହେଇନି, ଦଖଣ୍ଡି ପୂଜା କରି ଦେଇଚି । ପୂଜା ଖାଇବାକୁ ତାଙ୍କର ବାହିଁକି କେଜାଣି ମନ ହେଇଚି ।

—ହଇଲେ ତୋ ହାତରେ ପୂଜା ହୁଏ··· ? ମୁଁ ଭାବିଥିଲି ଖାଲି ସହରୀ ପିଠାପଣା କିଛି କିଛି ଜାଣିଥିବୁ ବୋଲି । ଯାହା ହେଉ, ବୋଉ ତୋର ଶିଖେଇ ଦେଇଚି, ନା ? ପୁଅଠା କେତେ ଦିନୁ କହିଲାଣି···ଅଉ ପାରୁନି ଲୋ ବୋହୂ । ମୁଗ ବଛୁର, ତାକୁ ଧୂଅ, ବାଟ···ଏତେ କଥା ମୋର କିଏ କରିବ ଭଲା ? ଜାଣିଥିଲେ ଉତେ ମୁଗ ଗଣ୍ଡେ ଦେଇ ଦେଇଥାଅନ୍ତି, ଏକା ସାଥିରେ ଡନି ଗ୍ରାରଟି କରି ଦେଇ ଥାଅନ୍ତୁ, ପିଲାର ଲାଳସାଟା ଯାଇଥାଅନ୍ତା ।

ରତନାଦେବୀ କହନ୍ତି, ଗଲାବେଳେ ଦପଟ ନେଇଯିବ । ପନ୍ଦର ଖୋଉଡ଼ିଏ ପଠ କରିଚି । ସିଏ ତ ସବୁଯାକ ଖାଇବେନି । ମୋର ଖଣ୍ଡେ ଅଧେ ହେଇ ଗଲେ ଚଳେ । ଭାବିଥିଲି, ତୁମ ଘରେ ଯାଇ

ଧପଟ ଦେଇ ଦେଇ ଆସିବ । ଯାହା ହେଉ ଆସିଚ ତ, ଆଉ ବାହାକୁ ଯିବ, ନେଇ ଯିବ ।

ରତନ ବୋଉ କହନ୍ତି, ନାଉଟା ଗଳ୍ପ ବେଳକୁ ଶୋଇପଡ଼ି ନଥିଲେ ତ ଭଲ । ନଇଲେ, ଅଲେ ଝିଅ—ଏଡ଼େ ଦୁଷ୍ଟ ହେଇଚ, ଅଉ କ'ଣ କହିବ ? ହାତରେ କ'ଣ କିଛୁ ଦେଖିଲେ କ'ଣ ରଖୁଚ ? ଛଡ଼େଇ ଗାଉଁ ଗାଉଁ କରି ପେଶିଯିବ । ହେଲେ ବେଶି ତ ଖାଇ ପାରେନା, ଏଇ ପୁଲ, ଚକୁଲି ହେଇଥିଲେ, ପଟେ ଧପଟ, ତାଆଠୁ ବେଶି ନୁହିଁ...ହଉ ଯାଉଚ କହି ରତନ ବୋଉ ଉଠୁ ଉଠୁ ହୁଅନ୍ତି ।

ରନାଦେବୀ ପଡ଼ରଟାଙ୍କରେ ଗୁରପଟ ପୁଲ ଥୋଇ ଆଉ ଟୋଟିଏ ପଡ଼ରରେ ଧୋଡ଼େଇ ଦେଇ କହନ୍ତି, ନାଣୀ ଗୁରପଟ ଦେଇଚ; ଧପଟ, ବୁବୁଲିକୁ ଦେବେ, ଆଉ ଧପଟ ତାଙ୍କୁ ଦବ ।

ରତନ ବୋଉ ଯାଉ ନ ଯାଉଣୁ କହୁଣୀ ଆସି ପହଞ୍ଚେ । (ତାର କହୁଣୀଟା ଟିକିଏ ପୋଡ଼ା ବୋଲି, ପିଲିଏ ତାକୁ କହୁଣୀ ବୋଲି ଡାକନ୍ତି) । କହେ ଖୁଡ଼ି, ବୋଉ କହିଲା, ତମର କ'ଣ ହେଇ ଥିଲେ ଟିକିଏ ଦଅ । ଆଜ ଆମର ରନ୍ଧା ହେଇନ ।

କହୁଣୀଘର ଟିକିଏ ନଥିଲା ଘର । କହୁଣୀନନାଙ୍କୁ ଦାସେ ଭାଇନା ବୋଲି କେବେ ଡାକୁ ନ ଥିଲେ ମଧ୍ୟ ରନା ଦେବୀଙ୍କର କହୁଣୀ ଝିଅସ୍ୱ । କହୁଣୀର ସେ ଖୁଡ଼ୀ । ଡାଲି ଗୁଡ଼ିଲ, କଂସା ବାସନ, ଶେଯ ଗୁଦିର, ଯାହା ଯେତେବେଳେ ସେ ଗୁହାନ୍ତି, ରନାଖୁଡ଼ୀ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ କରି ଥାଆନ୍ତି । କହୁଣୀ ବୋଉ, ଧାରନେବା ସୂତ୍ରରେ ସେ ସବୁ ନେଇ ଥାଆନ୍ତି । ପରିଶୋଧ କରି ନ ପାରି ମାସେ ଦିମାସ ପରେ ଖାଲି ଗୋଟିଏ କଥା କହି ଧାର ପରିଶୋଧ କରନ୍ତି । କଥାଟି ହେଉଚ, "କିଛୁ ଭାବିବୁନି ରନା ।" ରନା ପ୍ରକୃତରେ କିଛୁ ଭାବନ୍ତି ନି ।

ତେଣୁ କହୁଣୀ ଯେତେବେଳେ, ଅମ ଘରେ କଛୁ ରନ୍ଧା ହେଇନ କହୁଲ, ସେତେବେଳେ ସେ ଜାଣି ପାରଲେ, ତାଙ୍କ ଘରେ ଚୁଲ୍ଲୀ ଲଗିନ । କହୁଣୀ ଅଜ ଉପବାସରେ ରହିବ ।

କହୁଣୀର ଶୁଖିଲା ମୁହଁଟିକି ଦେଖି ତାଙ୍କ ହୃଦୟ ତରଳ ଯାଇଥିଲା ସେହି ମୁହୂର୍ତ୍ତରେ । ସେ ଜାଣନ୍ତି, ଏ ଘରୁ ଯାହାଯାଏ, କହୁଣୀ ପାଟିରେ ପଡ଼େନା । ଯାହା ବା ପଡେ ସେଥିରେ ପେଟ ପୂରେନା । କହୁଣୀ ନନା ଭାର ସ୍ୱାର୍ଥପର । ଖାଇଲାବେଳେ ଦୁଆର ଘର ଦେଇ ଖାଆନ୍ତି, ଅଥବା କହୁଣୀ ଅସି, ତାଙ୍କ ଭାଗରୁ କଛୁ ଖାଇଯିବ । ଦରମା ମିଳିବାର ପାଞ୍ଚଦନ ଭିତରେ ସେ ଖାଇ ଖାଇ ସବୁ ଶେଷ କର ଦଅନ୍ତି । ବାକୀ ପଚିଶ ଦନ ଧାରରେ ଚଳେ । ବାକୀ ଦେଲାବାଲା ମାସ ଶେଷରେ ଠେଙ୍ଗା ଧର ଅସି ଦୁଆରେ ବସେ । ସେ ସିମିତ ଦନଯାକ ବସିଥାଏ, କହୁଣୀ ନନା ଡାକବାଟେ ଅଫିସକୁ ଚାଲି ଯାଆନ୍ତି । ଫେରୁ ଫେରୁ ରାତି ଦାର ବାଜେ···ଦୋକାନୀ ଦରଓ୍ୟାନକୁ ବରକ୍ତ ହୋଇ ପଠାଏ ।

ତେଣୁ ରନାଦେବୀ କହୁଣୀକୁ କୋଡ଼ରେ ବସେଇ ପୁଳି ଖୁଅନ୍ତି । ଭୋକିଲା କହୁଣୀ ଗୋଟିକ ପରେ ଗୋଟିଏ କର ତନି ଚାରପଟ ନିଶ୍ଚିନ୍ତରେ ଠୁକିଯାଏ ।

ମାନ ରହେ ଚାରପଟ । ଦାସେ ଯଦ ଚାରପଟ ଖାଇସାର ଅଉର ମାଗନ୍ତି ତାହାହେଲେ···? ନଜ ଉଦାରତା ଲଗି ବଡ଼ ବ୍ୟସ୍ତ ହୁଅନ୍ତି ସେ । ନଜେ ତ ଖାଇବାର ଅଉ କୌଣସି ପ୍ରଶ୍ନ ଉଠେନ । ଚୁଲ୍ଲୀ ମୁଣ୍ଡରେ ଗୋଡ଼କୁ ଲମ୍ବେଇ ରନାଦେବୀ ଅପେକ୍ଷା କର ବସନ୍ତି ଦାସଙ୍କୁ । ମନରେ ଖାଲି ସେଇ କଥା । ପୁଳି ଖାଇ ଭାର ଖୁସି ହୋଇ ଉଠିବେ ଅଜ ! ଟିକିଏ ଥଣ୍ଡା ହେଇ ଗଲାଣି ନା ? ଅସନ୍ତୁ ସେ । ହାତଗୋଡ଼ ଧୁଆ ଧୋଇ ହେଉ ହେଉ ପୁଳିକୁ ଥରେ ଗରମ କରଦେଲେ ଚଳିବନି ? ଯଦ ପୁଳି ସାଙ୍ଗକୁ ତରକାରି ମାଗନ୍ତି···ନା ନା, ତରକାର କ'ଣ ହବ ? ମିଠା ତ

ପଢ଼ିବ···ବୁଧ ଅଛୁ, ତାକୁଇ ବୁଢ଼େଇ ବୁଢ଼େଇ ଖାଇଦେବେ ଯେ । କ'ଣ କରୁ ଖରାପ ହବ···ବାହୁନବେ ? କାନ୍ଦବେ ?··· ଖାଲି ତରକାରି ଠିକ୍‌ଏ କରନ ତ ? ଭଲେ କ'ଣ କରିଦେଲେ ହବନି···? ପନିପରିବା ତ ଅଛୁ । ଭାବି ଭାବି ରନାଦେବୀ ବଡ଼ ବ୍ୟତବ୍ୟସ୍ତ ହୋଇ ପଡ଼ନ୍ତି । ତାଙ୍କ ମନ ବୁଝେନି । ପୁଣି ଚୁଲ୍ଲୀକି ଲଗେଇ, ପନିପରିବା କାଟି ତରକାରି ବସାନ୍ତି । ବଡ଼ ଭୟ ହେଉଥାଏ···ଯଦି ଭଲେ ଅସି ପହଞ୍ଚି ଯାଅନ୍ତି···ସେ ଯୋ ଲୋକନା··ବାଢ଼ ବାଢ଼ କହି ବସି ପଡ଼ିବେ । ତରକାରି ନ ହୋଇଥିଲେ ଗାଳି ମେ ଗାଳି । ଏ ଯୋ କାଠ ନା···ଠିକ୍‌ଏ ଭଲକର ଜଳନ୍ତା ହେଲେ ।

ତରକାର ହୁଏ···
ଦାସେ ଅସନ୍ତି ନି ।
ରାତ ଦଶବାଜେ ।

ରନାଦେବୀ ଦାଣ୍ଡ ଦୁଆରେ ଠିଆ ହେଇ ବାଟକୁ ଚାହାଁନ୍ତି । ସେ ଅସିବାଭଳି କୌଣସି ସୂଚନା ନ ପାଇ ପୁଣି ଫେରି ଅସନ୍ତି ଘରକୁ । ପୁଣି ଚୁଲୀଟିକୁ ଓଲଟ ପାଲଟ କରନ୍ତି, ତରକାରିଗୁଡ଼ିକୁ ଚାହାନ୍ତି । ପୁଣି ମନେ ମନେ ଭାବନା ଖେଳେ···ଖାଇଲେ କେଡ଼େ ଖୁସି ହୁଅନ୍ତେ ସେ ।

ରନା ଦେବୀ ସେଇ ଚୁଲ୍ଲୀ ମୁଣ୍ଡରେ ।

ତାଙ୍କ ଅଖିକି ନିଦ ମାଡ଼ିଅସେ । ନିଦ ଭାଙ୍ଗେ । ଧଡ଼ପଡ଼ ହେଇ ଉଠି ବସି ପ୍ରଥମେ ଶେଯଟାକୁ ଅସି ଦେଖନ୍ତି । ହୁଏ ତ ଡାକୁଥିବେ, ନ ଶୁଣିଥିଲେ ଅସି ଶୋଇ ପଡ଼ିଥିବେ ପରା ।

ଶେଯ ଖାଲି ।

କ'ଣ ଅଜ ଅଉ ଅସିବେନି ? ମନେ ମନେ ଭାବନ୍ତି ରନା ଦେବୀ—ନା ଅସିବେନି କମିତ, କହିଯାଇଛନ୍ତି । ଯେତେବେଳେ······। ପୋଡ଼ପାଡ଼ କ ଅଫିସ ଗୋଟାଏ କେଜାଣି । ସମସ୍ତଙ୍କର ଦଶରୁ ଚାଲିଯାଏଁ ଉଠନ୍ତି ।

ଏମାନଙ୍କର ରାତ୍ର ନାହିଁ ଦିନ ନାହିଁ ସବୁବେଳେ କଲମ ଘୋରା । କେତେ ଯେ କହୁଛନ୍ତି, ପାଠ ତ ପଢ଼ିଛ, ବୁଦ୍ଧି ତ ଅଛି, ଏ ଅଫିସରେ ଚାକିରୀ ନ କରି କ'ଣ ଆଉ କୋଉ ଅଫିସରେ କଲେ ହବନି ? ଟଙ୍କା ଦିକୋଡ଼ି କମିଲେ କମୁ... ଦରକାର ପଡ଼ିଲେ ମୁଁ ଚାକିରୀ କରିବ । ବାଞ୍ଛା ନ ହୋଇଥିଲେ, ଚାକିରୀ ତ ପୁଣି କରି ଥାଆନ୍ତି ।

ଅତି ବିବ୍ରତ ହୋଇ ପଡ଼ନ୍ତି ସେ ।

ରାତ୍ର ଦଶ ବାଜେ ।

ଦୁଆର ଖଡ଼ ଖଡ଼ ଶୁଭେନା । ସାଇକେଲ ଘଣ୍ଟିର ଠିନ୍ ଠିନ୍ ଶବ୍ଦ କାନରେ ପଡ଼େ ନା ।

ପୃଥିବୀଟା ନିସ୍ତବ୍ଧ । ଚାରିଆଡ଼ ଅନ୍ଧାର—କେବଳ ଏଇ ଗୋଟିକ ଘରେ ଗୋଟିଏ ମାତ୍ର ଇଲେକ୍‌ଟ୍ରି ବଲ୍‌ବ ଜଳୁଥି । ଆଉ ଦୁଇଟି ଆଖିରେ ଲୁହ, ମନରେ କୋହ, ହୃଦୟରେ ଦାହ ।

ସକାଳ ପାହୁପାଏ...

ଅଫିସର ଜଣେ ସହକର୍ମୀ ଆସି ଘରେ ଖଣ୍ଡିଏ ଚିଠି ଦେଇ ଯାଆନ୍ତି—କହନ୍ତି, କାଲି ଦୀନବନ୍ଧୁ ଦେଇଥିଲେ ଦେଇ ଦେବାପାଇଁ । ମୁଁ ଅସିଲାବେଳକୁ ରାତ୍ର ହୋଇଗଲା । ଏତେ ରାତ୍ରରେ ଦୁଆର ବାଡ଼େଇ ଚିଠି ଦେବା ଠିକ୍ ହେବ ନାହିଁ ବୋଲି ଆଉ ଦେଇପାରି ନ ଥିଲି ।

ରମା ଦେବୀ ରାତ୍ର ଉଜାଗର ହେତୁ ଅତି କ୍ଳାନ୍ତ ହୋଇ ପଡ଼ିଥିଲେ । ପେଟରେ ଭୋକ, ମନରେ ଏକ ବିରାଟ ବିଦ୍ରୋହ ।

ଚିଠିଟି ଖୋଲି ପଢ଼ିଲେ—ଲେଖାଅଛି—

ରନା;

ହଠାତ୍ ମତେ ଗୋଟିଏ ସଭାରେ ଯୋଗଦେବାପାଇଁ ଗୋଟିଏ ମଫସଲକୁ ଯିବାକୁ ପଡ଼ୁଛି। ପୂଜା କରିବ ବୋଲି କହି ଆସିଥିଲି। ଯାଇ ଖାଇ ଆସିବା ପାଇଁ ସମୟ ନାହିଁ। ଭାରି ବ୍ୟଥିତ ହେବ ତୁମେ। କ'ଣ କରିବି ? ନିରୁପାୟ। ଯୁଁା ନା ସରକାରୀ, ବେସରକାରୀ ଭାଷାରେ 'ଡ୍ୟୁଟି' !

ମତେ ଅପେକ୍ଷା କରିବନି, ଖାଇପିଇ ଶୋଇ ପଡ଼ିବ।

। ଇତି ।

ଦୀନବନ୍ଧୁବାବୁ

ଦୀନବନ୍ଧୁବାବୁ ତା ଆରଦିନ ସନ୍ଧ୍ୟାବେଳେ ଆସି ପହଞ୍ଚିଲେ। କମିତ ଗଲେ, ସଭାରେ କେତେ ଲୋକ ହୋଇଥିଲେ, ସେ ବକ୍ତୃତା ଦେଲାବେଳେ ତାଳି କମିତ ବାଜୁଥିଲା, ହେଉଟି ଏବଂ ଫୁଲହାରଟି ମିଳିଥିଲା, ବଢ଼ିଆ ଗାଁଟିଏ, ଲୋକଗୁଡ଼ିକ ଭାରି ସରଳ—ଇତ୍ୟାଦି ନାନା କଥା କହିଗଲେ ସେ ରନା ଦେବୀଙ୍କି।

ସବାଶେଷରେ କହିଲେ, ଚିଠି ଦେଇ ପଠେଇଥିଲି, ପାଇଥିବ ?

ରନା ଦେବୀ ହଁ କଲେ।

ଦୀନବନ୍ଧୁ ଦାସେ ଜାଣିଲେ, ରନା ଦେବୀ ସେ ଦିନ ଫୁଲ ଖାଇ, ନିଘୋଡ଼ ନିଦରେ ଶୋଇ ପଡ଼ିଥିଲେ। ଚିଠିଟି ଯେତେବେଳେ ସେ ଦେଇଛନ୍ତି, ରନା ଦେବୀ ଯେତେବେଳେ ପାଇଛନ୍ତି, ତାଙ୍କର ଦାୟିତ୍ୱ ତୁଲେଇବାରେ କିଛି ବାଙ୍କି ରହିନି। ନିର୍ଦ୍ଦୋଷ ସେ।

ପତ୍ନୀବନ୍ଧୁ—କିଛି ଚିଠିପନ୍ଥ ଅଛିତ ?

ରମା ଦେବୀ ଟେବୁଲ ଉପରକୁ ଅଙ୍ଗୁଳି ଠାର କହନ୍ତି, ଗୋଟିଏ କାର୍ଡ଼କୁ ସାତ ଅଠଟି । ଏଠି ତୁମେ କାହା ପାଖକୁ ଲେଖ ଯେ ଆସିବ ? ଆସି ଆସି ସେଇ ଗୁଡ଼ାଏ ନିମନ୍ତ୍ରଣ କାର୍ଡ଼ । ଏ ଗୁଡ଼ାକ ଦେଖିଲେ ରମା ଦେବୀଙ୍କ ହାତ ଜଳି ଉଠେ ।

ଦାସେ ଗୋଟିକ ପରେ ଗୋଟିଏ ଲଫାଫା ଖୋଲି ଦେଖନ୍ତି···ପ୍ରେସ କନ୍‌ଫେରନ୍‌ସ, ଟିପାର୍ଟି, ଡିନର, ଏକ୍‌ଜକ୍ୟୁଟିଭ ମିଟିଂ ଇତ୍ୟାଦି । ସବା ଶେଷ କାର୍ଡ଼ଟା ଉଟିମା ଦେବୀଙ୍କର ।

"···ବିନୀତ ଅନୁରୋଧ ଆପଣ ଆସିବେ···ଆପଣଙ୍କ ନ ପଚାରି ଆପଣଙ୍କ ନାଁ କାର୍ଯ୍ୟକାରୀ କମିଟିରେ ରଖିଦେଇଛୁ । ଆଜି ପ୍ରଥମ ବୈଠକ । ଉପସ୍ଥିତି ନିତାନ୍ତ ଆବଶ୍ୟକ ।"

ନିତାନ୍ତ ଆବଶ୍ୟକ ଦୁଇଟା ଶବ୍ଦ ଯେତେ ତାଙ୍କୁ ଯିବାକୁ ବାଧ କଲାନି, ବାଧ କଲା ଉଟିମା ଦେବୀଙ୍କ ବିନୀତ ଅନୁରୋଧ ବୋଲି ଦୁଇଟା ଶବ୍ଦ ।

ଘଣ୍ଟାକୁ ଦେଖିଲେ, ଆଉ ପନ୍ଦର ମିନିଟ ବାକି । ନାଚ ସ୍କୁଲଟା ଏଠୁ ମାଇଲିଏ ବାଟ । ତରତର ହୋଇ ଲୁଗାପଟା ପିନ୍ଧି ବାହାରି ପଡ଼ିଲେ ସେ···

ଗଲାବେଳେ ରମା ଦେବୀ ପଚାରିଲେ, ରାନ୍ଧିବ ?

ରାନ୍ଧ ଥା ।

କିଛି ବାଟ ଗଲାପରେ ଦାସେ ପୁଣି ଫେରି ଆସି କହି ଦେଇଗଲେ, ଯଦି ସେଠି ଖାଇବାକୁ ପଡ଼େ, ତାହାହେଲେ··· ବୃଥାରେ ନଷ୍ଟ ହେବ ସିନା···ସ୍ତ୍ରୀ ଛଡ଼ା ସେ ଆଉ କିଛି କହି ନ ଥିଲେ ।

ନଷ୍ଟ ହେବାଟା ତ ଏ ଘରର ପରମ୍ପରା । ତେଣୁ ରମା ଦେବୀ ନ ରାନ୍ଧି ରହି ପାରିଲେନି, ରାନ୍ଧିଲେ । ହୁଏତ ଗାଈଟିରେ ଭଡ଼ି ହାଣ୍ଡି ଦରଣ୍ଡି ପାରନ୍ତି ଏଇ ଉଦ୍ଦେଶ୍ୟରେ ।

ସେ ଦିନ ତଟିନୀ ଦେବୀଙ୍କ ନାଚସ୍କୁଲଟି ବଡ଼ ସୁନ୍ଦର ଭାବରେ ସଜା ହୋଇଥିଲା—ପ୍ରଥମ କାର୍ଯ୍ୟକାରୀ କମିଟି ବୈଠକ ନା । ଦେଖିଲେ ନନ୍ଦତା ବି ଆସିଛି, ସିଏ ବି ଏଇ କାର୍ଯ୍ୟକାରୀ କମିଟିର ସଭ୍ୟା । ଖାଲି ନାଚକ୍ଲାସ ନ ରଖି, ଗୀତକ୍ଲାସ ମଧ୍ୟ ଖୋଲିବା କଥା ସ୍ଥିର ହେଲା । ପିଲା ସଂଖ୍ୟା ବି ବଢ଼ି ଗଲେଣି—ଶିକ୍ଷକ ଦୁଇଟି ଦରକାର । ଶେଷରେ ସ୍ଥିର ହେଲା ଯେ ପାଣ୍ଠି ସଂଗ୍ରହ କରାଯିବ । କାର୍ଯ୍ୟକାରୀ କମିଟିର ସମସ୍ତ ସଭ୍ୟ କିଛି କିଛି ସଂଗ୍ରହ ନ କଲେ ହବନି । ତଟିନୀ ଦେବୀ ଆଗରୁ ଚାନ୍ଦାଖାତା ଛପେଇ ଆଣିଥିଲେ । କାହାକୁ ଗୋଟିଏ, କାହାକୁ ଦିଓଟି ଦେଇ ସାରିବା ପରେ, ଦୀନବନ୍ଧୁ ବାବୁଙ୍କ ଦିଆ ହୋଇ ନ ଥିବା ଦେଖି କମିଟିର ଅନ୍ୟ ସଭ୍ୟମାନେ ପାଟି ତୁଣ୍ଡ କଲେ ।

ତଟିନୀ ଦେବୀ ସମସ୍ତଙ୍କୁ ବୁଝେଇ ଦେଇ କହିଲେ, ସେ ଯାହା ଚାନ୍ଦା ଦେବେ, ଆପଣମାନେ ଦେଇ ପାରିବେନି । ତାଙ୍କ କାଲମଗାରରେ ଯେଉଁ ପ୍ରଚାର ହୋଇ ପାରିବ ସେଥିରେ ଆପଣମାନେ ଯେଉଁଠିକି ଯିବେ ସେଇଠି ଚାନ୍ଦା ମିଳିବ । ଗୋଟେ ଜାଗାରେ ଦୁଇଶ, ଦୁଇଶ ଜାଗାରେ ଚାରିଶ ।

ସମସ୍ତେ ଚାଲିଯିବା ପରେ ତଟିନୀ ଦେବୀ ଦୀନବନ୍ଧୁ ଦାସଙ୍କ ସହିତ ବହୁତ ଆଲୋଚନା କଲେ । ଦୀନବନ୍ଧୁଙ୍କ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ । ତା ଛଡ଼ା ଦାସେ ତାଙ୍କ ପ୍ରତି କଥାରେ ସମର୍ଥନ କରନ୍ତି ବୋଲି, ଏ ପ୍ରଗାଢ଼ ବିଶ୍ୱାସଟା ତାଙ୍କର ପ୍ରଗାଢ଼ତର ହୋଇ ଉଠିଥିଲା ଏଇ କେତେଦିନ ମଧ୍ୟରେ ।

ତଟିନୀ ଦେବୀ କହିଲେ—ବାଦ୍ୟଯନ୍ତ୍ର, ପୋଷାକପତ୍ରର ଭଡ଼ା ଆମକୁ ଖାଉଛି । ଗୋଟିଏ ଦେଖାଇବାକୁ ଯୋରେ ପାଞ୍ଚ ଶହ ଟଙ୍କା ଲାଗୁଛି ଏଇ ପୋଷାକ ଭଡ଼ା ଆଣିବାରେ । ସେ ଦିନ "ଶକୁନ୍ତଳା" ନୃତ୍ୟନାଟ୍ୟ କଲୁ । ଦୁଷ୍ମନ୍ତଙ୍କ ପୋଷାକର ଭଡ଼ା କେତେ ଜାଣନ୍ତି ? ଦିନକୁ କୋଡ଼ିଏ ଟଙ୍କା । ଭାବୁଛି, ଏଣିକି ନିଜେ ଗୋଟେ ଦୋକାନ ଦେବି । କ'ଣ କିଛି ଭୁଲ ହେବ ?

ପ୍ରସ୍ତାବଟି ଦାସଙ୍କ ମନକୁ ଭାରି ମାନିଥିଲା । ସେ ହଁ କଲେ ।

ସ୍କୁଲ୍ ପାଇଁ ବେଞ୍ଚଟିଏ ଦରକାର—ନୁହେଁ କି ?

ହଁ ।

ସ୍କୁଲପାଇଁ ମାଇକ୍‌ଟିଏ ଦରକାର—ନୁହେଁ ?

ହଁ ।

ମଝିମଝିରେ ଖାଲି କମିଟି ସଭ୍ୟମାନଙ୍କ ସ୍ୱୀକୃତି, ସମର୍ଥନ ପାଇବାପାଇଁ ତଟିନୀ ଦେବୀ ବୈଠକ ବସାନ୍ତି । ହିସାବ କିତାବରେ କିଏ ମୁଣ୍ଡ ପୂରାଉଛି ଭାବି ବିରୋଧ ନ କରି ସମସ୍ତେ ସମର୍ଥନ କରନ୍ତି ।

ଯେଉଁମାନେ ବୁଝିସୁଝି ବିରୋଧ କରନ୍ତି, ତଟିନୀ ଦେବୀ ନାନା କଥା ଦର୍ଶାଇ, ନାନା ଅଭିଯୋଗ କରି ଗଣତନ୍ତ୍ରର ମହାଦାନ 'ସଂଖ୍ୟାଗରିଷ୍ଠ ସଭ୍ୟଙ୍କ ସମର୍ଥନ' ବଳରେ ଏଇ ବିରୋଧୀ ଲୋକଙ୍କୁ କମିଟିରୁ ସହଜେ କାଢ଼ିଦେଇ ଦେଇ ପାରନ୍ତି ।

କିଏ କେତେବେଳେ ବଦଳନ୍ତି, ଦାସେ 'ଜାଣିବାର ସୁଯୋଗ ପାଆନ୍ତି ସେତିକିବେଳେ ଯେତେବେଳେ ତଟିନୀ ଦେବୀ କହନ୍ତି, ଭାବିଥିଲି—ପରେଶଟା ଭଲ ଲୋକ, କିନ୍ତୁ ଦେଖିଲି, ତୁମ ମୋ ବିରୁଦ୍ଧରେ ଗୁପ୍ତମତ ଗୋଟାଏ ପ୍ରୋପାଗାଣ୍ଡା ଚଳେଇଛି । ମୁଁ କ'ଣ କରିବି, ବାଧ୍ୟହୋଇ କମିଟି ତାକୁ ଭଲ ପାଇଁ ନାହିଁ ଛାଡ଼ିଦେଲି ।

ଦାସେ ସେଇ ହଁଟି ଛଡ଼ା କିଛି କହନ୍ତି ନାହିଁ ।

ତଟିନୀ ଦେବୀ ସେଇ ହଁଟି ଭିତରୁ ବହୁ ଶକ୍ତି ସଂଗ୍ରହ କରି କହନ୍ତି, ଏଥର ସ୍କୁଲ୍ ପାଇଁ ଘର ଭଡ଼ା ଦେଇ ଚଳି ହେବ ନି । ନିଜେ ନିଜର ଅସ୍ଥାନ କରିବା ଉଚିତ । ଆପଣ ଟିକିଏ ଉଦ୍ୟମ କଲେ ହୁଅନ୍ତା । ମନ୍ତ୍ରୀଙ୍କ ସହିତ ତ ଆପଣଙ୍କ ପରିଚୟ ଅଛି ।

ଖାସମାହାଲର ସେଇ ଜାଗାଟା ପଡ଼ିଚ । ଅଧ ଏକରରୁ ବେଶି ହବ । କରଦେଇ ପାରିଲେ, ଦେଶ ଓ ଓଡ଼ିଆ ଜାତିଟା ପାଇଁ ବହୁତ କିଛି କଲେ ବୋଲି କିଏ କହୁ ନ କହୁ, ଲୋକେ କହନ୍ତେ ।”

× × ×

ଦୁହଁ ଦୁହଁ ବର୍ଷକ ଭିତରେ ସ୍କୁଲଘର ଠିଆ ହୋଇଯାଏ । ଦୁହାଦାତାମାନଙ୍କ ନାଁ ବୋର୍ଡ଼ରେ ଟଙ୍ଗା ହେଇ ରହେ, ଫଟୋ ମଧ୍ୟ । ସେଥିରେ କନ୍ଦୁ ଦାସଙ୍କ ନାଁ ନ ଥାଏ... ଗୁଜରାଟ, ମାରୱାଡ଼, ବଙ୍ଗାଳୀ ନଚେତ୍ ମନ୍ତ୍ରୀ, ଉପମନ୍ତ୍ରୀ କଣ୍ଟ୍ରାକ୍ଟର ଏଇମାନଙ୍କର ନାଁ ଓ ଫଟୋ ।

ଉଟିନୀ ଦେବୀ ଅବିବାହିତା... ଘରେ କେବଳ ନିଜର ଭାଇ ବୋଲି ଜଣେ ଦାଢ଼ିଆ ବାବାଜୀ ବେଶଧାରୀ ଯୁବକକୁ ଥାପି ଥାଅନ୍ତି ।

ଲୋକେ କହନ୍ତି, ମାଇପି ଲୋକଟାଏ, ନିଜ ଉଦ୍ୟମରେ ଜାତିପାଇଁ ବଡ଼ କଥାଟାଏ କଲା । ଅନ୍ତତଃ ପିଲଗୁଡ଼ାକ ନାଚ ଗୀତ ଟିକିଏ ଟିକିଏ ଶିଖି ପାରିଲେ ତ !

ପରେ ଦାସେ ଜାଣିଲେ ଯେ, ଉଟିନୀ ଦେବୀଙ୍କର ନିଜର ବୋଲି ସହରରେ ଚାରିଟି ଦୋକାନ—ଗୋଟିଏ ଲୁଗାପଟା, ଗୋଟିଏ ଅଳଙ୍କାର, ଗୋଟିଏ ମନୋହାରୀ ଆଉ ଗୋଟିଏ ଯାତ୍ରା-ପୋଷାକ ଓ ଯନ୍ତ୍ରବାଦ୍ୟର ଦୋକାନ ।

ଉଟିନୀ ଦେବୀଙ୍କ ସହିତ ବହୁ ଲୋକଙ୍କ ପରିଚୟ । କଥା କହନ୍ତି ଯେ ପାଣିରେ ସର ପକେଇଲା ଭଳି । ବ୍ୟବହାର ଅତି ଅମାୟିକ । ନୃତ୍ୟ ଗୀତ ପାଇଁ ଶହୀଦ ହେବାକୁ ମଧ୍ୟ ତିଆର । ଯେ କୌଣସି ସାମାଜିକ କାମରେ ଉଟିନୀ ଦେବୀଙ୍କ ଡାକ ।

ଶ୍ରଦ୍ଧାସଂଗ୍ରହ କଥା ଉଠିଲେ ତ ସଂଗ୍ରହକାରୀ ତାଲିକାରେ ତାଙ୍କର ନାଁ ଅଗରେ ରହିଥାଏ । ଶ୍ରଦ୍ଧାଦାତାମାନଙ୍କର ତାଙ୍କୁ ଶ୍ରଦ୍ଧାଦେବାଟା ଯିମିତି ଗୋଟାଏ ଅଭ୍ୟାସରେ ପଡ଼ିଯାଇଛି !

ଅଜ ବନ୍ୟାପାଣ୍ଠି ପାଇଁ ତ କାଲି ବିଶ୍ୱମହାଯଜ୍ଞ ପାଇଁ, ପଅରଦିନ ଅଉ କୋଉଥିପାଇଁ । ସବୁବେଳେ ଶ୍ରଦ୍ଧା । ପ୍ରତ୍ୟେକ ବ୍ୟବସାୟୀଙ୍କ ବାର୍ଷିକ ବଜେଟରେ ତଟିନୀ ଦେବୀଙ୍କ ଲାଗି ଶ୍ରଦ୍ଧା ପରିମାଣଟା ଧାର୍ଯ୍ୟ ହୋଇ ରହି ଯାଇଥାଏ ।

ଲୋକଙ୍କ ଧାରଣା—ତଟିନୀ ଦେବୀଙ୍କ ଦୋକାନରୁ ଜିନିଷ କିଣିଲେ ଭଲ ପଡେ । ଘରେ ଗୃହିଣୀ ନିଜ ସ୍ୱାମୀଙ୍କୁ ଗଲାବେଳେ କହିଥାଆନ୍ତି, କିଛି କିଣିବ ଯଦି ସେଇଠିକି ଯିବ । ତୁମେ ଏକା ଗଲେ ହେବନି, ମୀନାକୁ ଧରି ଯା । ସେ ସେଇ ଦେକାନ ଚିହ୍ନିଛି । ଦୋକାନରେ ବସିଥିବା ଲୋକ ମଧ୍ୟ ମୀନାକୁ ଚିହ୍ନନ୍ତି । ନାଚ ସ୍କୁଲରେ କୁଆଡେ ତାଙ୍କ ସହିତ ମୀନାର ସବୁବେଳେ ଦେଖା-ସାକ୍ଷାତ । ମୀନା ହାତରେ କିଣାଇବ ଯେ ଠକରେ ପଡ଼ିବନି !

ସବୁଠାରୁ ବଡ଼ ଦୋକାନ୍ ହେଲା, ତଟିନୀ ଦେବୀଙ୍କର ଏଇ ନାଚସ୍କୁଲଟି । ସାରା ଭାରତରେ ଏ ସ୍କୁଲର ନାଁ । ଓଡ଼ିଶାକୁ ଯିଏ ଯେତେବେଳେ ଆସିଲା, ତଟିନୀ ଦେବୀ ତାଙ୍କୁ ସ୍କୁଲକୁ ଡାକି ଆଣନ୍ତି; ନାଚଗୀତ ଦେଖେଇ ଆପ୍ୟାୟିତ କରନ୍ତି—ସେମାନେ ଗଲାବେଳେ ସାର୍ଟିଫିକେଟ ଦେଇ ଯାଆନ୍ତି, ଏଭଳି ସ୍କୁଲ ଭାରତରେ ବିରଳ । ଏଠାରେ ଯେଉଁ ନାଚ ଶିଖାଯାଏ, ଉଚ୍ଚକୋଟିର । ଏହାର ଉତ୍ତରୋତ୍ତର ଉନ୍ନତି କାମ୍ୟ ।

ଏହି ସାର୍ଟିଫିକେଟକୁ ଅତି ଯତ୍ନରେ ବନ୍ଧେଇ ରଖିଥାଆନ୍ତି ତଟିନୀ ଦେବୀ ।

ରେଟ ଚାର୍ଟ ବନ୍ଧା ହୋଇ ରହିଯାଏ···ଏକକ ନୃତ୍ୟପାଇଁ ଘଣ୍ଟାକୁ ଶହେ ଟଙ୍କା, ସମବେତ ନୃତ୍ୟପାଇଁ ପାଞ୍ଚ ଶହ·· ନୃତ୍ୟନାଟ୍ୟ

ପାଇଁ ହଜାରେ । ଓଡ଼ିଶା ଭିତରେ ଏତିକି । ବାହାରକୁ ଗଲେ ଏହାର ଦୁଇଗୁଣ । ଗ୍ରାହକମାନେ ବହୁତ ହେଇଯାଉଚ, ଟିକିଏ କମାନ୍ତୁ ବୋଲି ଅନୁରୋଧ କଲେ ତଟିନୀ ଦେବୀ ଖର୍ଚ୍ଚ ହିସାବ ଅତି ଚମତ୍କାର ଭାବରେ ଲମ୍ବେଇ ଯାଆନ୍ତି ।

ଯଥା—ଗୋଟିଏ ନାଚପାଇଁ ରିହର୍ସାଲ ଖର୍ଚ୍ଚ ଏତିକି, ପିଲାଙ୍କ ରିକ୍ସାଭଡ଼ା ଜଳଖିଆ ଏତିକି ଏତିକି, ମ୍ୟୁଜିକ୍‌ହାଣ୍ଡ ନେବେ ଏତିକି, ଯିବା ଆସିବା ଖର୍ଚ୍ଚ ଏତେ— । ମୋଟରେ ସେ ଯେଉଁ ହିସାବ ଦିଅନ୍ତି ସେଥିରେ ଲଭ୍ୟାଂଶ ରହେ ଦଶ କି ପନ୍ଦର ଟଙ୍କା । ଗ୍ରାହକମାନଙ୍କର ଏହି ହିସାବ ଫେଡ଼ାଣି ଗୁଣାଣି, ହରଣରେ ମୁଣ୍ଡ ବୁଲେଇ ହେଇଯାଏ । ନାଚଗୀତ ନ ହେଲେ ତ ସଭାରେ ଲୋକ ହେବେନି, ସେକ୍ରେଟେରୀଙ୍କ ପ୍ରଶଂସା ମିଳିବନି—ତେଣୁ ସେମାନେ ହଜି ପଳେ ଗୁଲନ୍ତୁ କହି ବହୁଣୀ ଦେଢ଼ଶହ ଦୁଇଶ ଦେଇ ସ୍ୱସ୍ଥାନକୁ ଫେରନ୍ତି ।

ତଟିନୀ ଦେବୀଙ୍କ ମଝିମଝିରେ ଟିକିଏ ରାଗ ବାହାରେ । ବାହାରେ ଟିକିଏ ବେଶିକର ସମାଲୋଚନା ହେଇଗଲେ, ସଙ୍ଗେ ସଙ୍ଗେ ଜେନେରାଲବଡ଼ି ବୈଠକ ଡ଼ାକି କହନ୍ତି, ମୁଁ ଆଉ ପାରିବି ନାହିଁ । ଆପଣମାନେ ଅଉ କାହାକୁ ଏ ଦାୟିତ୍ୱ ଦିଅନ୍ତୁ । ଏକେ ତ ମୋର ଦେହ ଖରାପ । ଦ୍ୱିତୀୟରେ ନିଃସ୍ୱାର୍ଥପର ଭାବରେ କାମ କରି କରି ସମାଲୋଚନା ସହି ପାରିବି ନାହିଁ ।

ସଭ୍ୟମାନେ ତାଙ୍କର ହାତଗୋଡ଼ ଧରି ଭାରି ଖୋସାମତି କରନ୍ତି—କିଏ ନାନୀ, କିଏ ଅପା, କିଏ ଦିଦିଁ ବୋଲି ସମ୍ବୋଧନ କରି କହନ୍ତି, ସମାଲୋଚନାଗୁଡ଼ାକ ବୃଥା କଥା—ଯୁଗଟା ସେଥି । କିଏ ଭଲକାମ କଲେ ଲୋକଙ୍କ ଦେହ ସହେନି । ସମାଜରେ ଏଭଳି ସମାଲୋଚକ ଗୋଠୁଟେ ସବୁବେଳେ ରହିଥାଆନ୍ତି, ସେମାନଙ୍କ ମୁହଁକୁ ବନ୍ଦ କରି ହେବନି । ସେଥିବୋଲି ଆପଣ ଇମିତ ଅଭିମାନ ହେଲେ ଚଳିବ ନାହିଁ ।

ଶେଷରେ ତଟିନୀ ଦେବୀ କହନ୍ତି, ଆପଣମାନଙ୍କ ଅନୁରୋଧରେ ଏହି ବର୍ଷଟାହିଁ ରହିବ । ଆର ବର୍ଷକୁ କିନ୍ତୁ କହିବେନି । ଆଉ ଜଣେ କାହାକୁ ଠିକ୍ କରନ୍ତୁ, ଦାୟିତ୍ୱ ସେ ନେଉ ।

ତା ଆର ବର୍ଷ—ତା ଆର ବର୍ଷ ଇମିତ ବର୍ଷକୁ ବର୍ଷ ବିତିଯାଏ—ଜେନେରାଲବଡ଼ି ବହୁଥର ବସେ । ନୂତନ ନିର୍ବାଚନ ହୁଏ—ଯିଏ ରହିବା କଥା ରହନ୍ତି⋯ତଟିନୀ ଦେବୀଙ୍କର ଇସ୍ତଫା ଦେବାକଥା ଆଉ ମନେ ପଡ଼େନି ।

"ତୋ ହାତକାଚ ବଜର ରହୁ" ଆଶୀର୍ବାଦ ଭଳି ତଟିନୀ ଦେବୀଙ୍କ ନାଚସ୍କୁଲରେ ଏକନାୟିକାତ୍ୱ ପଦ ବଜର ରହେ ।

ଦାସେ ଇମିତ କେତେ ଅନୁଷ୍ଠାନର କର୍ମୀ, କାର୍ଯ୍ୟକାରୀ କମିଟିର ସଭ୍ୟ । ତାଙ୍କ ଡାଏରୀ ଖାତାଟାରେ ଏସବୁ ଅନୁଷ୍ଠାନରେ ଯୋଗଦେବା ପ୍ରୋଗ୍ରାମଗୁଡ଼ାକହିଁ ବେଶି ଟିପା ହୋଇ ରହିଥିବା ଦେଖାଯାଏ । ଖାଇବାକୁ, ପିଇବାକୁ, ରନାଦେବୀଙ୍କ ପାଖରେ ଦୁଇ ଦ'ପଦ ଦୁଃଖସୁଖ ହେବାପାଇଁ ମଧ୍ୟ ତାଙ୍କୁ ସମୟ ମିଳେ ନା ।

ସହରକୁ ବହୁତ ସିନେମା ଆସେ । ଥିଏଟରକୁ ନିମନ୍ତ୍ରଣ ମିଳେ । ପୂର୍ବଦିନ ଦାସେ ଯେଉଁ ସିନେମା ଦେଖି ଆସିଥାଆନ୍ତି ଆଜି ରନାଦେବୀ, ଭଲ ସିନେମା ଆସିଚି, ଟିକିଏ ଦେଖେଇ ନିଅନ୍ତି ନି ବୋଲି କହିଲେ, ଦାସେ ନିହାତି ବାଜେ ହେଇଚି କହି ସିନେମା-ଦେଖା ବିରୁଦ୍ଧରେ ଗୁଡ଼ାଏ ଗପି ଯାଆନ୍ତି । ଭଲ ଜିନିଷକୁ କଦର୍ଥ କରନ୍ତି, ଟିକିଏ ଖରାପ ହୋଇଥିଲେ ତାକୁ ଇମିତ ଖରାପ କରି କହନ୍ତି ଯେ କୌଣସି ଲୋକର ଭୁଲରେ

ସୁଦ୍ଧା ଇଚ୍ଛା ହେବନି ଦେଖିଯିବା ପାଇଁ । ସେଇ ସିନେମାଗୁଡ଼ିକର ସେ ପ୍ରଶଂସା କରନ୍ତି, ଯୋଉ ଛବିଗୁଡ଼ିକ ଚାଲିଯାଇଥାଏ, ବର୍ଷେ ଦି ବର୍ଷ ଭିତରେ ପୁଣି ଆସି ପଡ଼ିବାର ସମ୍ଭାବନା ନ ଥାଏ ।

ହଁ, ଥରେ ଥରେ ଥିଏଟରକୁ ନିଅନ୍ତି ସେ । ରିନାଦେବୀ ଗୋଟିଏ ରିକ୍ସାରେ ଏକା ବସନ୍ତି, ଦାସେ ପଛରେ ସାଇକେଲରେ ବସି ଯାଆନ୍ତି ଥିଏଟର ହଲରେ ତାଙ୍କୁ ବସେଇ ଦେଇ, ତୁମେ ବସି ଦେଖୁଥି କି, ମୋର ଟିକିଏ କାମ ଅଛି କହି କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଯାଆନ୍ତି । ଥିଏଟର ଭାଙ୍ଗେ । ରିନା ଦେବୀ ଚାରିଆଡ଼େ ଅଖିକି ବୁଲେଇ, ଖୋଜି ଖବର ନ ପାଇ, ନିଜେ ରିକ୍ସାଟିଏ ଭଡ଼ାକରି ଦଶଟା ରାତିରେ ଭୟରେ ଥରହର ହୋଇ ଘରକୁ ଫେରନ୍ତି । ଘରକୁ ଫେରି ଦେଖନ୍ତି, ଦାସେ ଆସି ନାହାନ୍ତି ।

ଟିକିଏ ପରେ ଆସି କହନ୍ତି···ତୁମ ପଛେ ପଛେ ଆସୁଥିଲି, ତୁମେ ମତେ ହୁଏ ତ ଦେଖି ନ ଥିବ ।

ରିନା ଦେବୀ ମନକୁ ବୁଝାଇ ରୁହନ୍ତି ।

ସେ ଦିନ ମେଡ଼ିକାଲ୍ କଲେଜର ନାଟକବେଳେ, ଯାହାଙ୍କଲେ ନା, ରିନା ଦେବୀ ଏକାବେଳକେ କାନ୍ଦକାନ୍ଦ । ତାଙ୍କର କିଏ ଜଣେ ଭଉଣୀ ଲେଖା ହବ, ମେଡ଼ିକାଲ୍ କଲେଜର ଛାତ୍ରୀ—ସକାଳେ ଫୋନ କଲା—ଭାଇନା, ଭାଉଜଙ୍କୁ ଧରିଆସିବ, ମୁଁ ଗେଟରେ ଥିବି, କିଛି ଅସୁବିଧା ହବନି । କାର୍ଡ଼ ପଠେଇବାକୁ ସମୟ ହେବନି, କିଛି ମନେ ନ କରି ଚାଲିଆସିବ ।

ମେଡ଼ିକାଲ୍ କଲେଜରେ ଡ୍ରାମା ଭଲ ହୁଏ ବୋଲି ଦାସେ ନିଜେ ରିନା ଦେବୀଙ୍କର ଆଗରେ ବହୁତ କହିଥାନ୍ତି । ରିନା ଦେବୀଙ୍କର ସେ ସବୁ ମନେଥାଏ । ତେଣୁ ଦାସେ ଆସି, ଶୀଘ୍ର ତାକିଦ ଯିବ, କିଛି ଅସୁବିଧା ହବନି, ଏକା ଏକା ଯିବାକୁ ଭୟ କାହିଁକି, ତୁମଭଳି ବହୁତ ଭଉଣୀ ଅଭଉଣୀ ଫିଅ ପୁଣି ଯାଉଛନ୍ତି ତ କହି ରିନା ଦେବୀଙ୍କୁ ବୁଝେଇଥିଲେ ।

ତୁମେ ସାଙ୍ଗରେ ଯିବଟି କ ବୋଲି ରନା ଦେବୀ ପଚାରିବାରୁ ସେ କହିଥିଲେ, କହିଲି ପରା ତୁମେ ଚାଲିଯିବ । ମୋର ଗୋଟାଏ କାମ ଅଛି, ସା'ର ପରେ ଯିବ, ଆସିଲାବେଳେ କନ୍ତୁ ନେଇ ଆସିବ ।

ଏକା ଏକା ଯିବାକୁ ପଡ଼ିବ ଜାଣି ରନା ଦେବୀଙ୍କ ମନ ଭାଙ୍ଗିଗଲା । ମେଡ଼ିକାଲ୍ କଲେଜ କଥା ସେ ଜାଣନ୍ତି । ଯେଉଁଠି ଝିଅଗୁଡ଼ାକୁ ପୁଅ କି ଝିଅ ଚିହ୍ନିବା ମୁସ୍କିଲ, ସେଉଁଠି ଜଣକ ଅଲ୍ପଅରେ ପୁଅଝିଅଗୁଡ଼ାକ ଲାଗାଲାଗି ହୋଇ ଠିଆ ହୋଇ ଥାଆନ୍ତି, ଯେଉଁଠି ଝିଅ ହେଉ ବା ପୁଅଙ୍କର ହେଉ ହଷ୍ଟେଲରେ ରେଷ୍ଟ୍ରିକସ୍‌ନ ବୋଲି ଗୋଟାଏ ଜିନିଷ ନାଁକୁ ମାତ୍ର ଥାଏ, ସେଇଠିକି ସେ ଯିବେ । ସ୍ତିତରେ ଫେରିଲାବେଳେ ଯଦି ଇଏ ସେ ଦିନ ଥିଏଟରରେ ଦେଖା ନ ଗଲା ଭଳି ଦେଖା ନ ଦିଅନ୍ତି, ତାହାହେଲେ……ତାହାହେଲେ ତାଙ୍କ ଅବସ୍ଥା କ'ଣ ହେବ ?

ରନା ଦେବୀ ସେକଠୋଇ ମନା କରିଦେଲେ…ନାଁ ସେ ଯାଇ ପାରିବେ ନାହିଁ । ଶେଷରେ ସ୍ଥିର ହେଲା ଯେ ସେ ଏକା ଯିବେନି, ଝିଅଙ୍କ ସାଙ୍ଗରେ ଧରିଯିବେ । ଆସିଲାବେଳେ ଦାସେ ସାଙ୍ଗରେ ଆସିବେ ।

…ରନାଦେବୀ ଗଲେ । ନାଟକ ଦେଖିଲେ…। ଦାସଙ୍କ ତଥାକଥିତ ଭଉଣୀ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ସହକାରେ ପାଛୋଟି ନେଇ ଭଲ ସ୍ଥାନରେ ବସେଇଥିଲେ । ମଝିମଝିରେ ଭୁଜିଆ, ପାଣି ଆଣି ଦେବ କି, ଚାହା ଦରକାର କି ଆଦି ବିଷୟ ସେ ସମୟେ ସମୟେ ବୁଝୁଥିଲେ ।

ଦାସେ ପଂଝାଏ ସାଙ୍ଗସାଥିଙ୍କ ସହିତ ଗଲେ—ରନା ଦେବୀ ଯେଉଁ ଦୃଷ୍ଟିକୋଣରୁ ଥିଏଟରଟାକୁ ଦେଖୁଥିଲେ, ଦାସେ ତାର ଓଲଟା ଦୃଷ୍ଟିକୋଣରୁ ଦେଖୁଥିଲେ ।

ରନା ଦେବୀ ମଝିମଝିରେ ଠିଆ ହେଇ ଦାଣେ ଅସିଚନ୍ତି କି ନା, କୁଜଟି ବସିଚନ୍ତି ଜାଣିବା ପାଇଁ ଗୃହଅଡ଼କୁ ଅନାଇ ଦେଉଥିଲେ । ତଥାକଥିତ ଡାକ୍ତରୀ-ଛାତ୍ରୀ ନଣନ୍ଦକୁ କହୁଥିଲେ—ଦେଖିଲ, ଭାଇନା ଅସିଚନ୍ତି କି ନା ?

—ନାଇଁ କୁଜଟି ତ ଦେଖାଯାଉ ନାହାନ୍ତି । ଅସିନାହାନ୍ତି ବୋଧହୁଏ ।

ରନା ଦେବୀଙ୍କ ହାଲ୍କା ଶୁଣିଯାଏ···ଖାଲି ସେ ଗୀତାକୁ ପଚାରନ୍ତି, କେଇଟା ବାଜିଲାଣି ?,

ଗୀତା କହେ—ଦଶ ।

ରନା ଦେବୀଙ୍କ ବୁକୁତଳଟା ଭୟରେ ଥର ଉଠେ ।

—ଡ୍ରାମା କେତେବେଳେ ସରବ ?

ଗୀତା କହେ···ଅଉ ଘଣ୍ଟାକ ପରେ···ଅର୍ଥାତ୍ ରାତ ଏଗାରରେ ।

ରନା ଦେବୀ ଅଧିକର ଅତର୍କିତ ହୋଇ ଉଠନ୍ତି ।

ଇତମଧ୍ୟରେ ଦାସେ ସାଥିପିଲାଙ୍କ ସାଥିରେ ହଲ ଛାଡ଼ି ଚାଲିଅସନ୍ତି । ଅଭିନେତ୍ରୀଙ୍କ ରୂପ ତାଙ୍କ ଆଖିକି ଭଲ ଲାଗେନା ବୋଲି ବେଶି ସମୟ ବସିବାକୁ ତାଙ୍କର ଇଚ୍ଛା ହୁଏ ନି । ରନା ଦେବୀ ଯେ ସେଇ ଡ୍ରାମା ଦେଖି ଯାଇଛନ୍ତି, ତାଙ୍କର ମନେ ପଡ଼େନା ।

ଘରକୁ ଫେରି ଅସି ରନା ଦେବୀଙ୍କି ନ ଦେଖି ତାଙ୍କର ସବୁ କଥା ମନେପଡ଼େ । ଏତେ ରାତି ହେଲାଣି, ନାଟ ଦେଖାସରିନି ବୋଲି କହି ହେଇ ମନେ ମନେ ରନା ଦେବୀଙ୍କ ଉପରେ ଚିଡ଼ି ଉଠନ୍ତି । ମୁଣ୍ଡ ତାଙ୍କର ପାଗଳ ହୋଇ ଉଠେ । ସାଇକେଲ ଧରି ଦୌଡ଼ନ୍ତି ସେ, ପୁଣି ସେଇ ମେଡ଼ିକାଲ କଲେଜକୁ ।

…ନାଟକ ଶେଷ ହୁଏ । ରନା ଦେବୀ ଘୋଟ ହିଁ ଅଗ୍ରିଟିକ ଧର ଭିତରେ ବାହାରେ ଦାସଙ୍କୁ ବହୁତ ଖୋଜନ୍ତି—ପାଅନ୍ତି ନା । ଗୀତା କହେ—ଭାଉଜ, ବହୁତ ରାତି ହେଇଗଲାଣି, ଚାଲ ହଷ୍ଟେଲରେ ରହିଯିବ, କାଲି ଯିବ ।

ହଷ୍ଟେଲ ନାଁ ଧରିଲେ ରନା ଦେବୀଙ୍କ ଦେହ ଜଳି ଉଠେ । କହନ୍ତି, ଯେତେ ରାତି ହେଉ ପଛେ, ଚାଲିଯିବି । ଖାଲି ଖଣ୍ଡିଏ ରିକ୍ସା କରି ଦିଅ ।

କଟି କଟି ଅନ୍ଧାର ।

ରିକ୍ସାର ଘୋର ଅଭାବ । ହଠାତ ରିକ୍ସା ଖଣ୍ଡେ ମିଳେ । ଭଡ଼ା କରି ଅସନ୍ତି ରନା ଦେବୀ । ବାଟରେ ଦେଖାହୁଏ ଦାସଙ୍କ ସହିତ । କହନ୍ତି, ଭାବିଥିଲି ତୁମେ ଯାଇ ନ ବୋଲି ।

ରନା ଦେବୀଙ୍କ ଦାନ୍ତ କଡ଼ମଡ଼ ହୋଇ ଉଠେ…ରାଗରେ କହନ୍ତି, ଘରକୁ ଚାଲ, ବାଟଟା ।

ଘରକୁ ଆସି, ରନା ଦେବୀ କିଛୁ କହିପାରନ୍ତିନି, ଖାଲି ଭୋ ଭୋ କାନ୍ଦନ୍ତି ।

ତା ପରେ ଆରମ୍ଭ ହୁଏ ତାଙ୍କର ଅନଶନ…ରାତିରେ ଖିଆପିଆ ବନ୍ଦ । ତା ଆରଦିନ ବି ବନ୍ଦ । ପେଟର କ୍ଷୁଧାରେହିଁ ସେ ମନର ଅବସାଦକୁ ଘୋଡ଼େଇ ରଖନ୍ତି ।

ଦାସେ ତାଙ୍କ ମନର କଷ୍ଟ ବୁଝନ୍ତି କିନ୍ତୁ ରନା ଦେବୀଙ୍କୁ ବୁଝେଇ ପାରନ୍ତି ନାହିଁ ।

ଏ ଘରର ସୁଖ ବୋଇଲେ ମାତ୍ର ଗୋଟିଏ ବର୍ଷ । ଉଟିକୁ ଆସିବାର ଚାରିଦିନ ପରେ ଦାସେ ରନାଙ୍କୁ ଟାକ୍ସିରେ ବସେଇ ଗୋପାଳପୁର ପର୍ଯ୍ୟନ୍ତ ବୁଲେଇ ନେଇଥିଲେ । ବାଟରେ କେତେ ଖିସିଗପ । ଅସରନ୍ତି ସେ…!

ଗୋପାଳପୁରରେ ପାମବିଚ୍ ହୋଟେଲ ଭଳି ଅତି ମହାର୍ଘ୍ୟ ହୋଟେଲର ଗୋଟିଏ ବଖରାଘର ଭଡ଼ା ନିଆ ହୋଇଥିଲା । ଗଳ୍ପବେଳେ ଦାସେ କହିଥିଲେ···ହନିମୁନ ହବ । ଓଡ଼ିଆରେ ଅନୁବାଦ କରି କହିଥିଲେ ମଧୁଚନ୍ଦ୍ରିକା । ହନିମୁନ ଅପେକ୍ଷା ରିନାଦେବୀଙ୍କୁ ଏଇ ମଧୁଚନ୍ଦ୍ରିକା ଶବ୍ଦଟା ଭଲ ଲାଗିଥିଲା । ଇଂରାଜି ଶବ୍ଦ ଥାଇ କେତୋଟି ଓଡ଼ିଆ ଶବ୍ଦ କହି ବୋଲି ରିନାଦେବୀଙ୍କି ପ୍ରିୟ ଛାତ୍ରୀଙ୍କ ଭଳି ନିଜକୁ ଗୁରୁସ୍ଥାନରେ ରଖି ପଚାରୁଥିଲେ । ପରୀକ୍ଷା ହଲରେ ସାଙ୍ଗେ ସାଙ୍ଗେ ମାନସାଙ୍କ ପ୍ରଶ୍ନର ଉତ୍ତର ଦେଲା ଭଳି, ରିନା ଦେବୀଙ୍କୁ ଉତ୍ତର ଦେବାକୁ ପଡ଼ୁଥିଲା ।

କେଉଁଟା ଭୁଲ ହେଉଥିଲା, କେଉଁଟା ବା ଠିକ ହେଉଥିଲା । ଥରେ ଥରେ ଇମିତି ଗୋଟିଏ ଗୋଟିଏ ଶବ୍ଦ କହୁଥିଲେ ଯେଉଁ-ଥିରେ ସେ ଅତି ଖୁସି ହୋଇ ଉଠନ୍ତି । ପୁରସ୍କାର ସ୍ୱରୂପ ରିନାଙ୍କୁ ସେ ଗୋଟିଏ ଗୋଟିଏ ସକ୍କୁ ଚୁମା ଦିଅନ୍ତି । ଅଗରେ ଡ୍ରାଇଭରଟା ଦେଖୁଥିବ ବୋଇଲେ କ'ଣ ଭାବୁଥିବ ? ଭାରି ଲାଜ ମାଡ଼େ ତାଙ୍କୁ ।

ରିନାଦେବୀ କହନ୍ତି···ଛୁ ମଟର ଭିତରଟାରେ ? ପ୍ରଶ୍ନ ତ ପଚାରିବ, ଉତ୍ତର ତ ଦେବ, ମୁହଁଟା ମୁହଁ ପାଖକୁ ଲାଗି ଆସୁଚ କାହିଁକି ? ଟିକିଏ ଆଡ଼େଇ ହୋଇ ବସ ।

···ସେ ଗୁଡ଼ାକ ସବୁ ଦିନ ତାଙ୍କୁ ଲାଗିଥିଲା ଗୁରୁ ମିନିଟ ପରି ।

ତାର ଭିତରେ କେତେ କଥା । ସକାଳୁ ଆଠରୁ ଯେ ଦଶଯାଏଁ ସମୁଦ୍ର ଗାଧୁଆ । ଦାସେ କହନ୍ତି, ଇଠି ଲୋକଗୁଡ଼ାକ ଅଛନ୍ତି, ଆସ ଦୂରକୁ ଯିବା··· ବହୁତ ଦୂରକୁ । ବାଲିରେ ବାଲିରେ ଚାଲି ଚାଲି ରିନାଦେବୀ ନାକେଦମ୍ । ଟିକିଏ ବାଟ ଗଲା ପରେ ରିନାଦେବୀ କହନ୍ତି, ଇଠି ଗାଧୋଇଲେ କ'ଣ ଚଳିବନି ?

ଦାସେ କହନ୍ତି, ଭାରି ଗହଣିଆ ଜାଗାଟା । ଅନ୍ଧାର କରେଣ୍ଟ ଟାଣି ନେଇଯିବ ।

ଚାଲି ନ ପାରି ରନାଦେବୀ ଲଥକିନା ବାଲିରେ ବସି ପଡ଼ନ୍ତି ।

ଦାସେ ତାଙ୍କ ହାତକୁ ଧରି ଠିଆ କରେଇ କହନ୍ତି, ଚାଲି ନ ପାରୁଚ ଯଦି ହେଲେ ମୋ କାନ୍ଧରେ ହାତ ଦେଇ ଚାଲ ।

ଏଣିକି ଚାଲିଟା ଏଇ ଢଙ୍ଗରେ ହୁଏ ।

କିଛି ବାଟ ଯିବା ପରେ ଦାସେ କହନ୍ତି···ଏଇଟା ଠିକ୍ ଜାଗା । ଲୁଗାପଟା ପାଲଟାଯାଇଛି ପରେ ଦୁହେଁ ଧରାଧରି ହେଇ ସମୁଦ୍ର ଭିତରେ ପଶନ୍ତି । ସମୁଦ୍ରର ତେଜ ଭଲ ଲୋକଙ୍କ ମନ ଓ ପ୍ରାଣରେ ବହୁ ତରଙ୍ଗ ସୃଷ୍ଟି ହୁଏ ।

କୂଳକୁ ଆସି ସିକ୍ତବସନା, ଚପଳଛନ୍ଦା ରନାଦେବୀଙ୍କ ବୁକୁ ଉପରେ ଦାସେ ଶୋଇ ପଡ଼ନ୍ତି । ଉପରେ ସୂର୍ଯ୍ୟ, ତଳେ ପୃଥିବୀ, ମଝିରେ ରନାଦେବୀ···ରନାଦେବୀଙ୍କ ଯୌବନ ।

ସ୍ନାନପର୍ବ ସରେ···ଉଭୟେ ଫେରି ଆସନ୍ତି ହୋଟେଲକୁ ।

ଏ ବାବୁ ଆଗେ ଇଠିକି ବହୁଥର ଆସନ୍ତି । ଗଲାବେଳେ ପିଅନ ଦରୱାନ, ଖାନସାମାଙ୍କୁ କାହାକୁ ପାଞ୍ଚ, କାହାକୁ ଦଶ, ଟଙ୍କେ ମସେ ଦେଇ ଯାଆନ୍ତି । ସେଇଥିପାଇଁ ଦୀନବନ୍ଧୁ ଦାସେ ଘର ଭିତରେ ପଶୁ ପଶୁ ବାବୁ ଚାହା ନା କଫି ପଚାରି ପଚାରି ବିରକ୍ତ କରି ଦିଅନ୍ତି ଚାକର । ଦାସଙ୍କର କଫି ଖାଇବାକୁ ଇଚ୍ଛା ଥିଲେ ସୁଦ୍ଧା ବିରକ୍ତିର ପ୍ରକୋପରେ କଫି ନ ମାଗି କହନ୍ତି, କିଛି ଦରକାର ନାହିଁ, ପାନ ଲାଓ ।

ଇଠି ପାନର ଅର୍ଥ ପାଣୀୟ ।

ତେଣୁ ପୂର୍ବ ଅଭ୍ୟାସ ମତେ ଦାସେ ସେ ଦିନ ବି ପାନି ଲାଗି କହି ଦେଇ ଦେଇ, ଖାନସମା ପଚାରିଥିଲା, ବାବୁ ! ମେମ୍ ସାହେବଙ୍କେ ଲିୟେ ?

ହଠାତ୍ ତାଙ୍କ ଅଭ୍ୟାସ ଭାଙ୍ଗି ଯାଇଥିଲା । ସେ ପ୍ରକୃତିସ୍ଥ ହୋଇ ଉଠିଥିଲେ । କହିଥିଲେ, ବୁଡବକ୍, ମାଲୁମ ନେହିଁ ଅଭି ଲଞ୍ଚ ଖାନେ କା ବକ୍ତ । ଲଞ୍ଚ ଲେ ଆଓ ।

ସେ କେଡ଼େ ମଜା । ଆଗରେ ଟେବୁଲ ଉପରେ ନାନା ରକମର ଖାନା । ଦାସେ ରିନା ଦେବୀଙ୍କୁ କଣ୍ଟା ଚାମଚରେ ଖାଇବା ଏଇଠି ଶିଖେଇ ଦେଇଥିଲେ । ଆଗେ ଚାମଚରେ ଟିକିଏ ଟିକିଏ ସୁପ୍ ଖାଇ ସାରିବା ପରେ, ଅନ୍ୟ କିଛି ଖିଆ ହୁଏ । ଗୁଡ଼ାଏ ମାଂସ ଖାଇଗଲେ, ଦାସେ ରିନା ଦେବୀଙ୍କ ଖିଆକୁ ବନ୍ଦ କରି କହନ୍ତି, ଖାଲି ମାଂସ ଖାଅନି ରିନା ! କିଛି ଭେଜିଟେବଲ ଖାଇବା ଦରକାର ।

ଖାଇସାରିବା ପରେ ଫଳ ଖିଆ । ତା'ପରେ କପେ କପେ କଫି । ସବୁ ଭିତରୁ ଚିଂଗୁଡ଼ି ମାଛର ଝୋଲଟି ଭାରି ଭଲ ଲାଗି ଥିଲା ରିନାଦେବୀଙ୍କି । କମିତ ରାନ୍ଧୁଚନ୍ତି ଜାଣିବାପାଇଁ ଆଗ୍ରହ ହୋଇଥିଲା ତାଙ୍କର । ଦାସଙ୍କୁ କହିଥିଲେ, ଯିବା ପୂର୍ବରୁ ଏଠା ରନ୍ଧାବାଲା ଲୋକକୁ ଟିକିଏ କହିବ, ମୁଁ ତା ସାଥିରେ ରୋଷେଇ ଶାଳକୁ ଯାଇ, ଦିନେ ତାଠୁ ଝିନି ଗୁଡ଼ିଏ ପ୍ରକାର ତରକାରି ଶିଖି ଆସିବି । ଘରକୁ ଗଲେ ରାନ୍ଧିବି । ଦେଖିବ ମୋ ହାତରେ ହେଉଚି କି ନାହିଁ ।

ଦାସେ କହିଥିଲେ, କହିଲେ ସମ୍ମାନହାନି ହବ । ବଡ଼ ବଡ଼ ଲୋକେ ଆସି ଏଠି ରହିଥାଅନ୍ତି । ଜାଣିଲେ କ'ଣ କହିବେ ? ତୁମେ ତ ଆମର ମର୍ଯ୍ୟାଦା କ'ଣ ବୁଝନି ।

କହିବାଠୁ ଗୋଟାଏ ମସ୍ତବଡ଼ ଭୁଲ ହୋଇଗଲା ବୋଲି ଭାବି ଭାରି ଅନୁତାପ କରନ୍ତି ସେ । ତାଙ୍କ ମୁହଁଟି ଶୁଖିଯାଏ ।

ସାଂଧ୍ୟ ଭ୍ରମଣ ପାଇଁ ଯେତେ ଗେଲେଇ ଗେଲେଇ ଓଠରେ ,ହାତ ମାରି ଡାକିଲେ ମଧ୍ୟ ରିନାଦେବୀ ଯିବାକୁ ମନା କରନ୍ତି । ଅତି ବଳେଇଲେ କହନ୍ତି, କୁହ ମତେ କ୍ଷମା କରିବ ?

ଦାସେ କହନ୍ତି, କ୍ଷମା କ'ଣ ? କୋଉଥିପାଇଁ ?

ତୁମକୁ ଠିକଏ କହିଦଅ ବୋଲି କହିଲି ବୋଲି...

—ଓଃ ସେଇକଥା—କିଛି ନୁହେଁ । ଆସ ସମୟ ହୋଇଗଲା ବୋଲି କହି ଦାସେ ତାଙ୍କ ଆଡ଼କୁ ଯାଅନ୍ତି ।

ଖୋଲା ସମୁଦ୍ର ହାଓ୍ୱାରେ ଚାଲି ଚାଲି ବହୁତ ବାଟ ବୁଲନ୍ତି । ଭାରି ଆରାମ ଲାଗେ । ମଝିରେ ଗୋଟିଏ ଜାଗାରେ ବସି ନାନା ଅଜବ ନାନା ଗପସପ ହୁଏ ।

ଦାସେ ରିନାଦେବୀଙ୍କୁ କହନ୍ତି—ସମୁଦ୍ର କିଂବା ନିର୍ମଳ ଆକାଶକୁ କିଛି ସମୟ ଏକାଗ୍ରଭାବରେ ଚାହିଁ ରହିଲେ, ମନ ପ୍ରସନ୍ନ, ପ୍ରଶାନ୍ତ ହୋଇ ଉଠେ । ଏହି ନୀଳିମା ସହିତ ମନର ଯେପରି କିଛି ଘନିଷ୍ଠ ସଂପର୍କ ରହିଛି । ମନରେ ନାନା କଳ୍ପନା, ନାନା ସ୍ୱପ୍ନ ଜାଗେ । ସମସ୍ତ ଅବସାଦ କୁଆଡ଼େ ପୋଛି ହୋଇଯାଏ ।

ଗୋଧୂଳି ଆଲୋକରେ ରିନାର ମନଟା ଅତି ସଜୀବ ହୋଇ ଉଠେ । ସେ ଖାଲି ପ୍ରଶ୍ନ କରନ୍ତି, ଏତେ ପାଣି, ଏତେ ବାଲି କୁଆଡ଼ୁ ଆସିଲା ? ଏ ସମୁଦ୍ରଟା କୁଜଠି ଛୁଇଁଛି ? ଢେଉ ଗୁଡ଼ାକ କିମିତି ହୁଏ—ଶେଷରେ ପଚାରନ୍ତି; ତୁମେ କ'ଣ ତୁମ କବିତା, ଗଳ୍ପରେ ଠିକ ଏଇ ସମୁଦ୍ରକୁ ବର୍ଣ୍ଣନା କରିପାରିବ ?

ଦାସେ କହନ୍ତି—ଚଟପଟ ସବୁ କିଛି ହୋଇ ଯାଏ ନା । ପ୍ରଥମେ ଲକ୍ଷ୍ୟ କରିବାକୁ ହୁଏ—ତା ପରେ ଏହି ସମୁଦ୍ରର ଚିତ୍ରଟା ମନ ଭିତରେ ଲାଗି ରହିଯାଏ । ପିଲାମାନେ ଜଳରଙ୍ଗରେ ପାଣି ଟିକିଏ ଲଗାଇ କାଗଜ ଦେହରେ ଯେମିତି ଛବିଟି ଆଙ୍କିଯାଅନ୍ତି—ଆମ ମନ ଉପରେ ପଡ଼ିଥିବା ଏଇ ଛାପଟିକୁ କାଗଜ, କଲମ, କାଳିରେ ଆଙ୍କ ।

ଏହି 'ଅଙ୍କ' ଶବ୍ଦଟି ରନାଦେବୀଙ୍କ କାନରେ ଏକ ମଧୁର ଝଂକାର ତୋଳେ ।

ମାମୁଁଙ୍କ ବସାରେ, ମାମୁଁଙ୍କ ତୀକ୍ଷ୍ଣ ଦୃଷ୍ଟିକୁ ଏଡ଼େଇ ଯେବେ ଏଇ ଦାସେ ତାଙ୍କୁ ଅଙ୍କ ପଢ଼ାଉ ପଢ଼ାଉ, ଅଙ୍କର ଅର୍ଥ କ'ଣ ଜାଣ ରନା, କହୁ କହୁ ରନାଦେବୀ ଦାସଙ୍କ ଅଙ୍କରେ ଢଳି ପଡ଼ୁଥିଲେ । ଅଙ୍କର ଅର୍ଥ ଭାଷାରେ ନ କହି, କାର୍ଯ୍ୟରେ ଦେଖେଇ ଦେଉଥିଲେ ସେ ।

ମୁଣ୍ଡରେ ମସ୍ତ ଗୋଟାଏ ବେଣୀ ଲୋଟିପଡ଼ୁଥିଲା । ବ୍ଲାଉଜର ଫାଙ୍କ ଦେଇ ପିଠି ଓ ଭିତରର କଞ୍ଚୁଟା ନରମ ତ୍ୱକ୍ ଦାସଙ୍କ ଆଖିକୁ ଦେଖାଯାଉଥିଲା । ଦାସଙ୍କ ରକ୍ତ ଟିକିଏ ଚହଲି ଉଠିଥିଲା ସେତେବେଳେ । ବୁକୁଟା ପଡ଼ୁଥିଲା ଉଠୁଥିଲା । ଦବର୍ଷ ହେଲା ସେ ରନାକୁ ପାଠ ପଢ଼େଇ ଆସୁଥିଲେ । ପ୍ରଥମେ ଏ ଘରକୁ ଆସିଲା ବେଳେ ସେ ଯେଉଁ ନିରାଭରଣ ପୁଷ୍ପର ସାମନା ଭାଗଟାକୁ ଦେଖିଥିଲେ, ସେ ଫୁଲଟାରେ ଏତେଗୁଡ଼ାଏ ପାଖୁଡ଼ା ଯେ ଯ୍ୟା ଭିତରେ ହୋଇଯାଇଛି, ସେ କଳ୍ପନା ସୁଦ୍ଧା କରି ପାରି ନ ଥିଲେ ।

ରନାଦେବୀଙ୍କ ଚିବୁକକୁ ଧରି ଉଠେଇ ନେଇଥିଲେ ଦାସେ—କହିଥିଲେ ରନା, ଏ ବୟସରେ ଏତେଟା ଠିକ୍ ନୁହେଁ । ଅନ୍ତତଃ ଆଉ ବର୍ଷେ ଅଧେ ଯାଉ ।

ବର୍ଷେ ? ବହୁତ ସମୟ ପରି ବୋଧ ହୋଇଥିଲା ରନାକୁ ।

—ସିପ୍ରା ଘପସପ ସାର ତା ଘରକୁ ଫେର ସନ୍ଧ୍ୟା ସାତରେ ଗଲବେଳେ ଘରେ ଖଣ୍ଡିଏ ସିଗାରେଟ ଫୋପାଡ଼ି ଦେଇଥାଏ। ଭାବ ଅସନା ଦେଖାଯାଏ ଘରଟା—।

ଦାସେ ଆସନ୍ତି ସିପ୍ରା ଯିବାର ଅଳ୍ପ ସମୟ ପରେ ପରେ। ଥରେ ଥରେ ଜଲଦ ଗୃଲ ଆସନ୍ତି। ଝରକାବାଟେ ସିପ୍ରାକୁ ଦେଖି ଫେରଯାଇ ଟିକଏ ଦୂରରେ ତାଲତାଟିର ଗୁହା ଦୋକାନଟାରେ ବସି ରହନ୍ତି। ଦାସଙ୍କ ବଗ୍ର ଗୁଲୁଗୁଲ ଭାବ ଭଲ ଲଗେ। ଦୋକାନଦାର ନଟକୁ କଚ୍ଛୁ ବସଦ ନ ଦେଉଣୁ ଗୋଟିଏ ପତ୍ରରେ ଦଟା ବଗ୍ର, ଦଟି ପିଆଜ ଆଉ ଦୁଇଟି ଗୁଲୁଗୁଲ ଦେଇଯାଏ। ଗୋଟିଏ ବଗ୍ର ଖାଇବାକୁ ଦାସଙ୍କ ପାଞ୍ଚ ମିନିଟରୁ କମ ସମୟ ଲଗେ ନା। ସବୁଗୁଡ଼ାକୁ ଶେଷ କଲବେଳକୁ ଅନ୍ତତଃ ଅଧଘଣ୍ଟାକରୁ କମ ସମୟ ଲଗେନା। ଇତମଧ୍ୟରେ ସିପ୍ରା ରନାଦେବୀଙ୍କ ଘର ଗେଟ ପାରହୋଇ ଦାଣ୍ଡକୁ ବାହାର ଆସିବାର ଦେଖିଲେ, ଦାସଙ୍କ ଖିଆର ବେଗଟା ବଢ଼ିଯାଏ। ଗୋଟିଏ ଚୁମାରେ ସବୁଶେଷ। ନଟ ଗୁହା ଆଣି ଦେଲବେଳକୁ ଦାସେ କହନ୍ତି, ସମୟ ହୋଇଗଲଣି, ଆଉ କୋଉ ଗ୍ରାହକଙ୍କୁ ଦେଇ ଦେ। ଫେରଲବେଳେ ପିଇଯିବ।

ନଟ କହେ, ପିଅନ୍ତୁ, ନ ପିଅନ୍ତୁ ବାବୁ, ହସାବ ଖାତାରେ ଚଢ଼େଇ ଦେବ।

—ଚଢ଼ା ପଛେ—କହ ଦାସେ ସେ ସ୍ଥାନରୁ ପ୍ରସ୍ଥାନ କରନ୍ତି। ଶଢେ ଗଜଂବାଟକୁ ଦାସଙ୍କୁ ଲଗେ ଗଜେବାଟ ଭଳି। ଗଲବେଳେ ରନାଦେବୀ ଘରେ ନ ଥାଆନ୍ତି…ଘର ଭିତରେ ଘର, ଘର ଭିତରୁ ଗୋଟିଏ ଘରକୁ ଯାଇ ଥାଆନ୍ତି ସେ।

ଘରେ ପହଞ୍ଚି ପ୍ରଥମେ ଦାସେ ଚୌକୀ ଟେବୁଲଗୁଡ଼ାକୁ ଟିକଏ ଧଡ଼ ଧଡ଼ କରନ୍ତି, ଗଲାଖଙ୍କାର ମାରନ୍ତି।

ସେତେବେଳକୁ ରନାଦେବୀ ପୋଛପୋଛି ହେବାକୁ ଗାଧୁଆଘରେ ପଶିଥାଆନ୍ତି । ଇଲଗେ ଟ୍ରାଉଜରଟା ଖୋଲି ଦେହରେ ଟିକିଏ ପାଣିବୋଲି ହେଉଥିଲେ । ଟ୍ରାଉଜରଟା ପିନ୍ଧିପିବାକୁ ତର ସହେ ନା । ପ୍ରଥମେ ଧାଇଁ ଆସି ପଢ଼ାଘର ଦୁଆର ମୁହଁରେ ଠିଆ ହୋଇ କହନ୍ତି...ମୁଁ ଭାବୁଥିଲି, ଆପଣ ଆସିବେନି ବୋଲି । ଖଣ୍ଡିଆ ସିଗାରେଟଗୁଡ଼ାକୁ ଦେଖେଇ କହନ୍ତି...ଭାବନି ମୁଁ ଖାଏ ବୋଲି । ମୋର ଜଣେ ସଂଗିଙ୍କର କେତେଦିନ ହେଲା ଏ ବଦଭ୍ୟାସ ହୋଇଯାଇଚି । ପ୍ରାୟ ପ୍ରତି ସନ୍ଧ୍ୟାରେ ଆସେ, ଗୁଡ଼ାଏ ଫୁଙ୍କିଦେଇ, ଏଗୁଡ଼ାକୁ ଏଇଠି ଫୋପାଡ଼ି ଦେଇ ଚାଲିଯାଏ ।

ଆପଣ ଟିକିଏ ବସନ୍ତୁ, ମୁଁ ଝାଡ଼ୁଟା ନେଇ ଆସୁଚି ଓଳେଇଦେବି ।

ଦାସେ ବସୁ ନ ବସୁଣୁ ରନାଦେବୀ ଝାଡ଼ୁଟି ଧରି ପହଁଚନ୍ତି

ଘର ଗୋଟାକ ଯାକ ଅଳିଆ ଓଳାଇବାକୁ ଆରମ୍ଭ କରନ୍ତି ସେ । ରନାଦେବୀ ନିଃଶବ୍ଦରେ, ନିଃସଂକୋଚ ଭାବରେ କାମ କରି-ଯାଆନ୍ତି । ଝାଡ଼ୁଟା କେତେବେଳେ ଏ ହାତରୁ ସେ ହାତକୁ—ବେଣୀ ଦଇଟା କେତେବେଳେ ତଳକୁ, କେତେବେଳେ ଉପରକୁ । ଦାସେ ଲକ୍ଷ୍ୟ କରନ୍ତି, ଦେହ ସଂପର୍କରେ ଝିଅପିଲାଙ୍କର ଯେଉଁ ସଚେତନତା ଓ ଲଜ୍ଜାବୋଧ ଥାଏ, ରନାଦେବୀଙ୍କର ଆଦୌ ନାହିଁ । ଭାରି କ୍ୟାରଲେସ, କ୍ୟାରଫ୍ରିଂ, ଅଯତ୍ନ ସେ । ଦେହରୁ କେତେଥର ଲୁଗା ଖସି ପଡ଼ଲାଣି; ପିଠି ଉପରେ, ଛାତି ଉପରେ ଲୁଗା ଠିକମତେ ରହୁଚି କି ନା, ରନାଦେବୀ ଚିନ୍ତା ସୁଦ୍ଧା କରନ୍ତି ନି । ରନାଦେବୀଙ୍କ ଅନେକ ଗୋପନୀୟତା ଦାସଙ୍କ ଆଖିରେ ଅନାବୃତ ଭାବରେ ପଡ଼େ ।

ମନେ ମନେ ଭାବନ୍ତି ଦୀନବନ୍ଧୁ ଦାସେ । ବର୍ଷେ ସମୟ ଦେଇ ବଡ଼ ଭୁଲ କରିଚନ୍ତି ସେ । ରନାଦେବୀଙ୍କ ଦେହଟା ଈ

ଚିକ୍କଣ । ନିଟୋଳ ଗଠଣ । ଏଭଳି ସୁଗଠିତ ଅବୟବ ଖୁବ୍ କମ ଝିଅଙ୍କଠି ଦେଖାଯାଏ ।

ମଝି ମଝିରେ ରମାଦେବୀ ଠିଆହୋଇ ପଡ଼ି କହନ୍ତି—କୁହନ୍ତୁ, ଆଜ କୁଠି କଣ୍ଟୁ ମଇଳା ରହିଲା ?

ଦାସେ କହନ୍ତି, ମନରେ ।

—ଏଁ, ମନରେ ? ତୁମର ନାଁ ମୋର ?

—ବୋଧହୁଏ ଉଭୟଙ୍କର ।

—ନାଁ, ମୋ ମନରେ ଅଟଦୀ ନାହିଁ କହୁ, ଅଧା ଅଧା ହସରେ ରମାଦେବୀ ଘରୁ ବାହାରି ଯାଆନ୍ତି । ଗଲାବେଳେ କହନ୍ତି, ଟିକିଏ ଡେରି ହେବ, ଅପେକ୍ଷା କରିଥିବେ । ନିଜ ଦେହକୁ ଦେଖି ବିସ୍ମୟ ପ୍ରକାଶ କରି କହନ୍ତି, ଆରେ ଦେହରେ କ'ଣ ଚାଙ୍ଗଜ ନାହିଁ ! ଓଃ, ଏଇଥିପାଇଁ ଖାଲି ଦହକୁ ଦେଖି ତୁମ ବୁକୁଟା ଇମିତି ଧଡ଼୍‌କିରି ଉଠୁଚି ନା ! ଭୁଲି ହୋଇଗଲା ବୋଲି ଇମିତି ନିରେଖି ଦେଖିଲେ ଚଳିବ ? ପୁଅପିଲାଗୁଡ଼ାକଙ୍କର ତ ଏଇ ରୋଗ ଗଲାନି । ମାମୁଁ କହୁଥିଲେ ପରା—ପଇସାତ ଦେବା, କୌଣସି ଅଧ୍ୟାପିକା କିମ୍ବା ଏମ୍.ଏ. ପାଶ ମହିଳାଙ୍କୁ ଡାକିଲେ ଭଲ ହ'ନ୍ତା । ଇଂରେଜୀରେ ଟିକିଏ ଯାହା ଦୁର୍ବଳ । ପରୀକ୍ଷା ପୂର୍ବରୁ ଦି ତିନିମାସ ପଢ଼େଇ ଦେଲେ ଠିକ୍ ହୋଇଯିବ ।

କିନ୍ତୁ ମ ଇଁଙ୍କର ଏକାଙ୍ଗଦ୍—ସେଇ ଦୀନବନ୍ଧୁ ଦାସ ! ତୁମ ପଢ଼ାରେ କୁଆଡ଼େ ଝିଅମାନେ ଫେଲ ହେବାକୁ ଥିଲେ ମଧ ପାସ କରି ଯାଆନ୍ତି । ଦି ମାସ ହେଲା ତ ପଢ଼େଇଲଣି, କ'ଣ ମୁଁ ଶିଖିଛି ? କୋଉ ବିଷୟରେ ମୋର ଦୁର୍ବଳତା, ନିଜେ ତ ବୁଝିପାରୁ ନାହିଁ ।

ଦାସେ କହନ୍ତି, ଯାହା ବା ଦୁର୍ବଳତା ଥିଲା ତାକୁ ଏ ଦି ମାସ ଭିତରେ ତୁମେ ଅତିକ୍ରମ କରିଗଲଣି । ତୁମକୁ ପାଠ

ପଢ଼େଇ ପଢ଼େଇ ମୁଁ କାଠ ପାଲଟି ଯାଇଚି ମୃଚ୍ଛନା ! ତୁମକୁ ଦେଖିବାରେ ଯେଉଁ ଆନନ୍ଦ ପାଉଚି, ଶୁଣିବାରେ ସେ ଆନନ୍ଦ ପାଇବି କି ନା ଜାଣେନା । ମତେ ଖାଲି ଭଲ ଲାଗୁଚି କିନ୍ତୁ ଭଲ ପାଇ ପାରୁନି । ତୁମର ସାନ୍ନିଧ୍ୟ ବହୁଥର ପାଇଚି, କିନ୍ତୁ ମୁଁ କୌଣସି ଶୂନ୍ୟତା କିଂବା ଅସ୍ଥିରତା ବୋଧ କରିପାରୁ ନଥିଲି । ମୋର ନିଃସଙ୍ଗତାର ଯନ୍ତ୍ରଣା ଯୁଆ ମଧ୍ୟରେ ବହୁତ ଉପଶମ କରି ପାରିଚ ତମେ ।

ରମାଦେବୀ କହିଥିଲେ, ଖାଲି ବ୍ଲାଉଜରେ ଠିଆ ହେଲଣି ବହୁ ସମୟ ଧରି—ବହୁତ ଶୁଖେଇଲଣି ମଧ୍ୟ । ବସ, ଖାଲି ବ୍ଲାଉଜଟା ପିନ୍ଧ, ଲୁଗାଟା ପାଲଟି ଚାଲିଆସେ । ଚାଲିଯିବାପରେ ପୁଣି ଫେରି ଆସି ରମାଦେବୀ କହନ୍ତି, କ'ଣ କିଛି ଖାଇବେ ? ଆପଣ ତ ଦକ୍ଷିଣ ଓଡ଼ିଶାର ଲୋକ । ଦୋସା, ଇଡ଼ଲି, ଚଟଣି ଛଡ଼ା ଯାହା କହିବେ ଆଣି ଦେଇ ପାରିବି । ଡାଲମା ନୁହେଁ, ଖାଣ୍ଟି ଘିଅରେ । କ'ଣ ଆଣିବି କୁହନ୍ତୁ । ଦାସେ ଚୁପ ରହିବା ଦେଖି ରମାଦେବୀ କହନ୍ତି, ଆରେ ଡେରି ହୋଇ ଯାଇଚି ଯେ ଶୀଘ୍ର କୁହନ୍ତୁ ।

ଦାସେ କହନ୍ତି, ପାଣି ଗ୍ଲାସେ ଆଉ କପେ କଫି ।

—କଫି ? କଫି ହେଇ ପାରିବନି । ଚାହା ?

—କଡ଼ା ଚାହା ।

—ବେଶ, ସିମିତ ଧଡ଼ଧାଡ଼ କହିଲେ ସୁନା ପିଲା । ଚୁପ ମାରି ବସିଲେ ଭାରି ରାଗ ଲାଗେ । ଝିଅପିଲାଙ୍କ ପରି ଲାଜ ସରମ କିଛି ରହିବା ଉଚିତ ନୁହେଁ । ଏଇ ଲାଜ ସରମ ହେତୁ ଜାଣି, ଅନେକେ ଭୋକରେ ରହିଯାନ୍ତି ।

ଯୁଆ ପୂର୍ବରୁ କେତେବେଳେ ଝିଅ ହୋଇଥିଲା ବୋଲି ପଚାରିଥିଲେ ରମାଦେବୀ ।

ଏଇ ଟିକକ ପୂର୍ବରୁ ନଷ୍ଟ ଦୋକାନରୁ ବରା, ପିଆଜ, ଗୁଲୁଗୁଲା ଖାଇ ଆସିଚି କହିବାକୁ ଭାବି ସଙ୍କୋଚ ଲାଗିଥିଲା ଦାସଙ୍କୁ । କହିଲେ, ଦିପହର ଖିଆଟା ଟିକିଏ ବେଶି ହୋଇଯାଇଚି, ଜୀର୍ଣ୍ଣ ହେଇନି ।

—ଏଠୁ ଗଲେ କ'ଣ ଖାଇବେ ?

ଭାବିଚି ଆଜ ଆଉ କିଛି ଖାଇବି ନି, ଲେଖାଲେଖି ଟିକିଏ ଅଛି, କରିଦେଇ ଶୋଇ ପଡ଼ିବି ।

ଯା' ପରେ ଆଉ ବେଶି ସମୟ କଥାବାର୍ତ୍ତା କରିପାରି ନ ଥିଲେ ରିନାଦେବୀ । ହଠାତ୍ ତାଙ୍କର "ଦେହରେ ବ୍ଲାଉଜ ନାହିଁ" କଥା ମନେ ପଡ଼ି ଯାଇଥିଲା । ହଉ...କହି ସେ ଏଥର ଭିତରକୁ ପଶି ଯାଇଥିଲେ...।

ଠିକ୍ ଅଧଘଣ୍ଟାକ ପରେ ଯେଉଁ ରିନାଦେବୀ ଏ ଘରକୁ ଆସିଲେ, ସେ ଦେଖାଯାଉଥିଲେ ଅନ୍ୟ ଜଣେ ପରି । ଦେହର ଚତୁର୍ଦ୍ଦିଗରେ ଆବରଣ । କିନ୍ତୁ ଏଇ ଅଳ୍ପ କେତେ ସମୟ ପୂର୍ବରୁ ଦାସଙ୍କ ଆଖିରେ ଯେଉଁ ରିନାଦେବୀ ଧରା ଦେଇଥିଲେ, ତାଠୁ ସୁନ୍ଦର ଦେଖାଯାଉ ନ ଥିଲେ ସେ ।

ରିନାଦେବୀଙ୍କ ମୁଖମଣ୍ଡଳରେ ଦୀପ୍ତିହୀନ ଗମ୍ଭୀରତା । ଗୋଟିଏ ପ୍ଲେଟରେ କିଛିଟା ଉପମା ଆଉ ଗୋଟିଏ ପ୍ଲେଟ ଉପରେ କଫି କପେ ଧରି ଧୀରେ ଧୀରେ ପଶି ଆସିଲେ ସେ ଭିତରକୁ । ସେତକ ଟେବୁଲ ଉପରେ ଥୋଇଦେଇ କହିଲେ, ଆପଣ ଏତକ ଖାଆନ୍ତୁ କି ମୁଁ ପାଣି ନେଇ ଆସୁଛି ।...ତୁଏ ତ ଆସିବାକୁ ଟିକିଏ ଡେରି ହୋଇ ଯାଇପାରେ...ଅପେକ୍ଷା କରିବେ ନି, ଖାଇଦେବେ...ଏଁ । ନଇଲେ ଥଣ୍ଡା ହୋଇଯିବ ।

ଦାସେ କହିଥିଲେ—ଉପମା ଖାଇ ସାରିବା ପରେ କଫି ପିଇ, କିଏ ପାଣି ପିଏନି । ଆଗ ପାଣି ପିଇ ତା ପରେ କଫି ଖିଆଯାଏ ।

ଓଃ । ରମାଦେବୀ ଭାରି ଲଜ୍ଜିତ ହୋଇ ପଡ଼ିଥିଲେ । ତାହାହେଲେ ସାଙ୍ଗେ ସାଙ୍ଗେ ନେଇ ଆସୁଚ; ଆପଣ ଉପମାତକ ଖାଇପକାନ୍ତୁ ।

...ରମାଦେବୀ ପାଣି ଆଣି ଦାସଙ୍କ ହାତକୁ ବଢ଼େଇବା ମାତ୍ରେ ଦାସେ ଟେବୁଲ ଉପରକୁ ଅଙ୍ଗୁଠି ଦେଖେଇ ଏଇଠି ଥୁଅ ବୋଲି ନିର୍ଦ୍ଦେଶ ଦେଲେ । ରମାଦେବୀ କିନ୍ତୁ ନଛୋଡ଼ବନ୍ଧା । କାହିଁକି ମୋ ହାତରୁ ନେଇଗଲେ ଜାତି ଚାଲିଯିବ ? ମୁଁ ବି ବ୍ରାହ୍ମଣ ଘରର ଝିଅ ମ !

ପାଣି ଗ୍ଲାସଟା ନେଉ ନେଉ ଦାସଙ୍କ ଅଙ୍ଗୁଠି ବାଜିଥିଲା ରମାଦେବୀଙ୍କ ଅଙ୍ଗୁଠିରେ । ରମାଦେବୀଙ୍କ ଆଖି ଦିଟା ଚିକ ଚିକ୍ କରି ହସି ଉଠିଲା । ସେ ଯିମିତି ଦାସଙ୍କ କାନରେ କହିଲେ, ଏତେ ଲାଜକୁଳା ହେଲେ ଚଳିବ ? ଇମିତି ଆରମ୍ଭ ହେଇଥାଏ । ଦେହରେ ବିଦ୍ୟୁତ୍‌ଶକ୍ତିର କରେଣ୍ଟ ଖେଳିଗଲା ଭଳି ଅନୁଭବ କରିଥିଲେ ଦାସେ । ଶୋଷରେ ଦାସଙ୍କ ଗଳା ଶୁଖି ଶୁଖି ଆସୁଥିଲା...ତାଙ୍କ ମନ ଭିତରେ କିଏ ଯିମିତି କହୁଥିଲା, କିଓ ଦାସେ ଏଇ ଠିକ୍‌କରେ ଏତେ ବିପର୍ଯ୍ୟୟ !

ଏତେ ବଡ଼ ଘରଟା—ସ୍ଥିତ ଥିଲେ ଏକା ରମାଦେବୀ ଆଉ ଦୀନବନ୍ଧୁ ଦାସ । ଘର ବାହାରକୁ ଚାଲିଯିବାକୁ ଚେଷ୍ଟା କରିଥିଲେ ସେ, ପାରି ନ ଥିଲେ । ଦାସଙ୍କ ରକ୍ତରେ ଆଜି ପ୍ରଥମେ ଝଡ଼ ସୃଷ୍ଟି କଲେ ରମାଦେବୀ ।

ତା ପରେ ଯେଉଁ ଝଡ଼ଗୁଡ଼ାକ ହୋଇଥିଲା, ସେ ଗୁଡ଼ାକ ଦୀନବନ୍ଧୁ ଦାସଙ୍କ ଅଜ୍ଞ । କେତେବେଳେ ନଦୀ କୂଳରେ, କେତେବେଳେ ଜଙ୍ଗଲ ଭିତରେ ପିକନିକ୍ ଚବଳେ—ବେଣୀ ଟଣାଟଣି, କଟାକ୍ଷପାତ, ଗପସପ, କବିତା ପାଠ, ଉପନ୍ୟାସ ଉଦ୍‌ଘୋଷନରୁ ।

ଥରେ ଥରେ ରମାଦେବୀ ଦାସଙ୍କୁ କହନ୍ତି, ବୟସ ତ ହୋଇଗଲାଣି, ବାହା ହଉ ନାହାନ୍ତି ? ମତେ ବାହା ହବାକୁ ଇଚ୍ଛା କି କୁହନ୍ତୁ, ଚେଷ୍ଟା କରିବ ମାମୁଁ ଓ ବାପା, ମାଅଙ୍କୁ ପ୍ରଭାବିତ କରିବାକୁ ।

ଦାସେ କହନ୍ତି, ମତେ ବାହାହେଲେ ସୁଖୀ ହୋଇ ପାରିବ ?

ରମାଦେବୀ କହନ୍ତି—ସୁଖ ନଇଲେ ଦୁଃଖ, ସେଇଥିରୁ ଗୋଟେ କିଛି ହବ । ସମସ୍ତେ କ'ଣ ସ୍ତ୍ରୀକୁ ବାହାହେଲେ ସୁଖୀ ହୋଇ ପାରିବ ବୋଲି ମନରେ ଗୋଟାଏ ମାଇଲଖୁଣ୍ଟ ପୋତି ବାହାହୋଇ ଥାଆନ୍ତି ? ସୁଖ ଦୁଃଖଟା ତ କାହାର ହାତର କଥା ନୁହେଁ । ଜୀବନଟା ତ ସଂଗ୍ରାମ ! କିଏ ହାରେ କିଏ ଜିତେ । ସୁଯୋଗ ଦୁର୍ଯୋଗ ନାନା କଥା ରହିଛି ।

ଭୂଣରେ ସୁନାରୂପାଗୃହଧର ଯିଏ ଜନ୍ମ ହୋଇଥାଏ, ସିଏ ତ ପୁଣି ଦାରିଦ୍ର୍ୟ ଭିକାରୀ ହୋଇ ବୁଲୁଛି । ଏ ଉଦାହରଣ ତ ତୁମେ ଦେଖିଛ, ମୁଁ ଦେଖିଛି...ଦେଖି ଅସୁଚେ ।

...“ମତେ ବାହା ହବ କି” ଏଇଟା ଗୋଟାଏ ଅକସ୍ମିକ ଦୁରୂହ ପ୍ରଶ୍ନ ପରି ବୋଧ ହୋଇଥିଲା ଦାସଙ୍କୁ । ସଠିକ ଭାବରେ କୌଣସି ଜବାବ ଦେଇ ପାରି ନ ଥିଲେ ସେ...।

ଦାସଙ୍କ ଅସ୍ଥିରତାକୁ ଦେଖି ରମାଦେବୀ କହିଥିଲେ—କହିଦେଲି ବୋଲି ଭାବୁଚ କ'ଣ ମୁଁ ସତେ ତମକୁ ବିବାହ କରିବାପାଇଁ ବ୍ୟଗ୍ର ! ମୁଁ ତମକୁ ଭଉଁଧର ବାନ୍ଧିବାକୁ ଚାହେଁନା । ...ତୁମର ଶିକ୍ଷା, ତୁମର ଜାତିଗୋତ୍ର, ପେଶା, ଚାକିରୀ ଆଦିକୁ ଦେଖି ମୁଁ ଜଣେ ଯୋଗ୍ୟପାତ୍ର ବାଛୁଛି ବୋଲି କହିଲେ, ବାପ ମା ଖୁସିରେ ରାଜି ହେବେ ବୋଲି ଇମିତି ଖାଲି କହୁ କହୁ କହିଦେଲି । ତୁମର ଅନ୍ୟ କୌଣସିଠି ଯଦି ବାହାହେବାର ପ୍ରସ୍ତାବ ଥାଏ, ତାହାହେଲେ ମୁଁ ତାର ପ୍ରତିବନ୍ଧକ ହେବାକୁ ଚାହେଁନା ।

ପ୍ରକୃତରେ ଦାସଙ୍କର ଅନ୍ୟଠି ବାହାହବାର ପ୍ରସ୍ତାବ ପଡ଼ିଥିଲା ଜଣେ ବନ୍ଧୁଙ୍କ ଭଉଣୀଙ୍କୁ । ଦେଖିବାକୁ ଅବଶ୍ୟ ରେନାଦେବୀଙ୍କଠୁ ସୁନ୍ଦରୀ ନୁହଁ କି ଶିକ୍ଷିତା ନୁହଁ । ବନ୍ଧୁ ଜଣେ ବଡ଼ ସରକାରୀ ଅଫିସର । ଘରେ ମୁମୂର୍ଷୁ ବୁଢ଼ୀ ମା । ସାତ ଅଠ ମାସ ତଳେ ବାପାଙ୍କର ଏକ ଜିପ୍ ଦୁର୍ଘଟଣାରେ ମୃତ୍ୟୁ ହୋଇଗଲା । ବିଧବା ବୁଢ଼ୀ ମାଙ୍କ କଥାକୁ ଏଡ଼ିଯିବା ବନ୍ଧୁଙ୍କ ପକ୍ଷରେ ସମ୍ଭବ ନୁହେଁ । ବାପା ମରିଯିବା ଦିନଠୁ ସେ ଲଗେଇଚନ୍ତି—ପରଶୁ, ଚନ୍ଦ୍ରଟିକି ସେଇ ପିଲାଟି ସହିତ ବାହା କରେଇ ଦେ । ମୋରବା ଆଉ କେଇଦିନ ରହିଲା ?

ସେଇ ପିଲାଟି ହେଉଚନ୍ତି ଦାସେ । ବୁଢ଼ୀ ତାଙ୍କୁ ଖୁବ୍ ଭଲପାଆନ୍ତି । ପିଲାଦିନୁ ପରଶୁ ଆଉ ଦାସଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିଲା । ଏକାଠି ପଢ଼ୁଥିଲେ, ଏକାଠି ଖାଉଥିଲେ । ପରୀକ୍ଷା ସମୟରେ ତ ଦାସେ ଆଉ ନିଜ ଘରକୁ ଯାଉ ନଥିଲେ । ମାସ ମାସ ଧରି ଏଇଠି ରହୁଥିଲେ ସେ ।

ଚନ୍ଦ୍ରା ଥିଲା ସେତେବେଳେ ଅଠ ଦଶ ବର୍ଷର ଝିଅ । ଦୀନବନ୍ଧୁ ଦାସଙ୍କ କଥାବାର୍ତ୍ତା, ଚାଲିଚଳଣିରୁ ବୁଢ଼ୀ ଠଉରେଇ ନେଇଥିଲେ, ଯା' ବୁଦ୍ଧି ଯିମିତ, କେବେହେଲେ ପେଟ ଅପୋଷା ରହିବ ନା । ବୁଦ୍ଧି ଥିଲେ ନିଧି ଆପେ ଆପେ ଆସେ । ତେଣୁ ସେ ମନେ ମନେ ଚନ୍ଦ୍ରା ପାଇଁ ଏଇ ପିଲା ଠିକ ବର ବୋଲି ବାଛି ନେଇଥିଲେ ।

.. ମାଟ୍ରିକ ପରେ ପରଶୁ ଓ ଦାସେ ପରସ୍ପରଠୁଁ ଅଲଗା ହୋଇଗଲେ—କିଏ କୁଆଡ଼େ ଯାଇ ରହିଲେ । ତଥାପି ମଝିରେ ଚୁନିଙ୍କ ଦେଖିବା ଅଶାରେ ଦାସେ ପରଶୁ ଘରକୁ ଅସନ୍ତି । ଚୁନି ପାଇଁ ଅସିଲାବେଳେ ନାନା ରକମର ଜିନିଷ ଧରି ଅସନ୍ତି । ପରଶୁକୁ ଏସବୁ ଭଲ ଲାଗେନା । କିନ୍ତୁ ମା ଉପରେ ପରଶୁକୁ ଗୃହ ପ୍ରବେଶ ନିଷେଧ ଆଦେଶ ଦେଇ ପାରେ ନା ସେ ।

ମା ଟିକିଏ ରକ୍ଷଣଶୀଳା । ଚୁନିଙ୍କ ପାଠ ପଢ଼େଇବା ପାଇଁ, ଟିକିଏ ନାଚଗୀତ ଶିଖେଇବାପାଇଁ ପରଶୁର ଇଚ୍ଛା । ଥରେ ଅଧେ ବୁଢ଼ୀ ପାଖରେ ପରଶୁ ନିଜ ସ୍ତ୍ରୀ ଜରିଆରେ ଏ ପ୍ରସ୍ତାବ ପକେଇଥିଲା । କିନ୍ତୁ ମା ତୁଣ୍ଡରୁ ଯୋ ଜବାବ ପାଇଲା, ସେଥିରେ ସେ ଏକାବେଳକେ ସାବାଡ଼ । ପାଟିବନ୍ଦ । ଚୁନି ସେଇ ଯାହା ଅପରପ୍ରାଇମେରୀଯାଏଁ ଗାଁ ସ୍କୁଲରେ ପଢ଼ିଥିଲା, ସେତିକି ।

ସହରରେ ଅଫିସରଙ୍କ ଘରେ ରହିଥିଲେ ମଧ୍ୟ ଚୁନି ଦେହରେ ସହରୀହାଓ୍ୱା ବାଜିବାକୁ ଦେଇ ନ ଥିଲେ ପରଶୁରାମ ମା । ଗୋଟିଏ ଘରେ ରହିଥିଲେ ମଧ୍ୟ ଏ ମା ପୁଅ ଦୁହେଁ ଅଲଗା ଘରେ ରହିଲାଭଳି ଚଳୁଥିଲେ । ଏ ଭଳି କି ଇଲେକଟ୍ରିକ ଆଲୁଅ ସୁଦ୍ଧା ତାଙ୍କ ଘରକୁ ନେବା ପାଇଁ ପରଶୁ-ମା ପର[illegible]କୁ ମନା କରି ଦେଇଥିଲେ । ସେ ରହିଥିବା ଘରଟି ଅଗରେ ଗୋଟିଏ ତୁଳସୀ ଚଉରା । ବୁଢ଼ୀ ସଞ୍ଜବେଳେ ଏଇଠି ବଳିତା ଦେଇ ଘଡ଼ିଏ କାଳ ମୁଣ୍ଡିଆ ମାରନ୍ତି ।

ରାତି ହେଲେ ଘିଅ ବଳିତା ଲଗେଇ ଚୁନିଙ୍କ କହନ୍ତି, ମା ଭାଗବତ ପଢ଼ । ଚୁନି ମାଙ୍କ ରେପେଇରେ ଦର୍ଶନ ଅରୁଆ ଖାଏ

ଏ ପଟେ ଘରେ ଡାଇନିଂ ଟେବୁଲ, ପଠାଣ ଖାନସାମାଙ୍କ ରନ୍ଧାପରଶା ଚାଲେ । ପରଶୁରାମ ସ୍ତ୍ରୀଙ୍କୁ ଧରି ଏକାଠି ଟେବୁଲରେ ବସି ଖାଆନ୍ତି । କୁକୁଡ଼ା ମାଂସ, ଅଣ୍ଡା ନ ହେଲେ ପରଶୁରାମ ଓ ପରଶୁରାମଙ୍କ ସ୍ତ୍ରୀ ନିର୍ମଳାଦେବୀଙ୍କ ହାତ ଚଳେ ନା । ଢେଢେ

ଲୋକ ଯିବାଆସିବା କରନ୍ତି, ଅତିଥି ଅଭ୍ୟର୍ଥନା ଚାଲେ, ଦାଣ୍ଡଘରେ ଥରେ ଥରେ ଗାଜଣା ବାଜଣା ହୁଏ ।

ଚୁନାର ଥରେ ଥରେ ଇଚ୍ଛା ହୁଏ, ସେ ଘରକୁ ଯାଇ ଦେଖି ଆସିବାପାଇଁ । ଭାଇ, ଭାଉଜଙ୍କ ସାଥିରେ ମଠରରେ ବୁଲାବୁଲି କରିବାପାଇଁ, ଶୀତଦିନ ସଞ୍ଜବେଳେ ଭାଇଭାଉଜଙ୍କ ସାଙ୍ଗରେ ବାଡ଼ିଅଗେ ବ୍ୟାଡ଼ମିନଟନ ଖେଳିବାପାଇଁ । କିନ୍ତୁ ମାଙ୍କ କଡ଼ା ନଜରରେ ସେ ସବୁ ହୋଇପାରେ ନା ।

ସଞ୍ଜହେଲେ ସେଇ ଭାଗବତ ପଢ଼ା—ଶୁଣ ପରୀକ୍ଷ ନରନାଥ, କୃଷ୍ଣଚରିତ ଭାଗବତ ।

କାର୍ତ୍ତିକମାସ ଆସିଲେ ମା ପୁରୀକି ଯାଆନ୍ତି ହବିଷ କରିବା ପାଇଁ । ଥରେ ଚୁନାକି ଘରେ ଛାଡ଼ି ଯାଇଥିଲେ । ଆସିଲାବେଳକୁ ଦେଖିଲେ—ଚୁନା ବସି ଭାଇଭାଉଜଙ୍କ ସାଥିରେ ତାସ ଖେଳୁଛି । ପୁଅକୁ ତ କିଛି କହି ପାରନ୍ତି ନି । ଚୁନା ଉପରେ ରାଗ ଯେ କହିଲେ ନ ସରେ ! ବୋହୂକୁ କହନ୍ତି, ମୁଁ ମରିଗଲେ, ମୋ ଚୁନାକି ଚୁଲିରେ ମୁହିଁଦିଅ ପଛେ, ଜୀଇଁଥିବା ଯାକ, ମୋ ଆଖିରେ ଏସବୁ ଅଧର୍ମ ଦେଖାଅ ନି ।

...ସେଦିନ ଏକଜିଦ୍ ଧରି ବସିଲେ ପରଶୁରାମ । ନୂଆପାଞ୍ଜିରେ ମାଘ ମାସରେ ତିଥିଅଛି । ଦୀନବନ୍ଧୁକୁ ଡାକି ନିର୍ବନ୍ଧ କରିଦେ ପରଶୁ । ପରଶୁ ଅନିଚ୍ଛାସତ୍ତ୍ୱେ ଦୀନବନ୍ଧୁଙ୍କୁ ନିଜର ପରମ ବନ୍ଧୁର ସମ୍ବର୍ଦ୍ଧନା ଜଣାଇ ଯିବାଆସିବା ବାଟଖର୍ଚ୍ଚ ଦେଇ ଡାକି ଆଣିଥିଲା

...ଦୀନବନ୍ଧୁ ପରଶୁକୁ କହିଥିଲା, ନା ଭାଇ, ନିର୍ବନ୍ଧ ଫିର୍ବନ୍ଧ କିଛି ଦରକାର ନାହିଁ । ଚୁନାକି ନିଶ୍ଚୟ ବାହାହେବି, ତୋ ମନକୁ କଥା ଦେଇଛି ଯେତେବେଳେ, କଥାକୁ ତ ଫେରାଇ ନେଇ ଯିବି ନି ।

ଜଣେ ପୁରୁଖା ଅଭିଭାବକଙ୍କ ଭଳି ପରଶୁ ଲେଙ୍କାଙ୍କର, ହିନ୍ଦୁଧର୍ମର ନୀତିନିୟମ ବଖାଣି, ମାଙ୍କୁ ଉତ୍ତେଜିତ ସେଦିନ ନିର୍ବନ୍ଧ ଘଡ଼ିଏ ନ କରେଇ ଛାଡ଼ି ନ ଥିଲା ।

ଏଇ ନିର୍ବନ୍ଧହିଁ ବାଧା ଦେଉଥିଲା ଦାସଙ୍କୁ । ତେଣୁ ସେ ରନାଦେବୀଙ୍କ ଟେକଠୋକ ପ୍ରଶ୍ନର ଉତ୍ତର ସାଙ୍ଗେ ସାଙ୍ଗେ ଦେଇ ପାରି ନ ଥିଲେ ।

× × × ଦାସଙ୍କ ଭାଇଭଉଣୀ, ମାମୁଁମାଈଁ ବୋଲି ଲେଖା ହେଉ ବା ଯୋଖା ହେଉ ଯେତେଜଣ ବନ୍ଧୁ-ବାନ୍ଧବ (ସ୍ୱକୁଟୁମ୍ବ ନୁହନ୍ତି) ଥିଲେ, ସେମାନେ ସବୁବେଳେ ଇଙ୍ଗେଇଲେ, କିଏରେ ଦୀନୁ, ବାହା ବଅସ ଗଡ଼ିବା ଉପରେ । ବାହା ନ ହୋଇ ଆଉ କେତେଦିନ ରହିବୁ ? ଦାସଙ୍କ ମୌନତାକୁ ସମ୍ମତିର ଲକ୍ଷଣ ବୋଲି ସେମାନେ ଭାବନ୍ତି । ଏଇ ବନ୍ଧୁବାନ୍ଧବଙ୍କ ଘରେ ଅନେକ ଅଭିଆଡ଼ି ଝିଅ ଥାଆନ୍ତି । ତେଣୁ ପ୍ରସ୍ତାବ ଦେଲାବେଳେ, ଅମୁକଙ୍କ ଝିଅଟି ଦେଖିବାକୁ ସୁନ୍ଦର, ପାଠ ବି ପଢ଼ିଛି, ଜମିବାଡ଼ି ସବୁ ଦେବେ ବୋଲି କୁହନ୍ତି—

ଯୌତୁକ ନାଁ ଧରିଲେ ଦାସଙ୍କ ମନରେ ଘୃଣାଭାବ ଜନ୍ମେ । ତାଙ୍କ ମୌନତା ଭାଙ୍ଗିଯାଏ...ନାହିଁ କରି ଦିଅନ୍ତି ।

ଚୁନିକି ବାହାହବା ପ୍ରସ୍ତାବ କଥା କେବଳ ଚୁନିର ଜଣେ ମାମୁଁ ଲେଖା ବ୍ୟକ୍ତି ଯିଏକି ଦାସଙ୍କର ମଧ୍ୟ ଲେଖାରେ ଭଣଜା, ସେଇ ଜାଣି ଥାଆନ୍ତି । ସେ କେବଳ ଚୁନି ଚୁନି ହୋଇ ଦାସଙ୍କ ଆଗରେ, ଦାସେ ନ ଜାଣିଥିଲା ପରି ନାନା କଥା ବଖାଣନ୍ତି ।

ସେଇ ବ୍ୟକ୍ତିହିଁ ଦିନେ ଅର୍ଥାତ୍ ଚୁନିର ବାହାଘର ହେବାର ବୋଧହୁଏ ଆଠଦିନ ପୂର୍ବରୁ ଆସି ଦାସଙ୍କୁ କହିଲେ,

ବୁଝିଲି ଦିନୁ, ପରଶୁଙ୍କର ମୁଣ୍ଡ ପାଗଳା ହୋଇଗଲା । ତୋ ନିର୍ବନ୍ଧ ଭାଙ୍ଗି ଜଣେ ଓଭରସିଅର ସାଥିରେ ଚୂନାକୁ ଛାଡିବାକୁ ବସିଲାଣି ।

...ସେଇଦିନ ହିଁ ଦାସେ ଚିଠି ଲେଖିଲେ ରନା ପାଖକୁ । ମୂର୍ଚ୍ଛନା, ମୁଁ ତମକୁ ବାହାହେବାକୁ ପ୍ରସ୍ତୁତ । ଜୁନ ୨୧ ତାରିଖ ଦିନ ମୁଁ ଯିବି, ତୁମକୁ ନେଇ ଆସିବି । ହୋମ ଫୋମ କ୍ରିୟାପ୍ରକ୍ରିୟା ସହିତ ଆମର କୌଣସି ସଂପର୍କ ନାହିଁ । ପ୍ରଗତିଶୀଳ ଦୁନିଆରେ ଏଗୁଡାକ ଅନ୍ଧବିଶ୍ୱାସ ।

ଠିକ ସେଇଦିନ ଜର ଦାସେ ପହଞ୍ଚିଥିଲେ ରନା ପାଖରେ । ରନା ଥିଲା, ଉତ୍ତର ଓଡ଼ିଶାର କୌଣସି ଏକ ସହରରେ ।

ଶହେଟି ଟଙ୍କାର ଶହେ ଜଣକିଆ ଗୋଟିଏ ଗୃହା ଭୋଜି, ବରିଷ୍ଠ ବ୍ୟକ୍ତିଙ୍କର ଆଶୀର୍ବାଦ, ନାଚ ଗୀତ ତାମସା ମଧ୍ୟରେ ଦାସେ ବାହା ହୋଇଥିଲେ ରନାଦେବୀଙ୍କୁ ।

ସେଇ ତଥାକଥିତ ଭଣ୍ଡୋଇଙ୍କ ଛଡ଼ା ସେଦିନ ଟିପାର୍ଟିରେ ଦାସଙ୍କର ସମସ୍ତ ବନ୍ଧୁ ଯୋଗଦେଇଥିଲେ । ଶଳା ଓ ଶଳା ଭାଉଜ ଟିପାର୍ଟି ସାରି ଆସିଲେ କୁଆଡେ ରହିବେ, ଖଟରେ ଶୋଇବେ କି ତଳେ ଶୋଇବେ, ସେଇ କଥାହିଁ ଭାବୁଥିଲେ । ହାତରେ ପଇସା ନ ଥିଲା ବୋଲି ଧାର କରି ଗୋଟିଏ ଦଶଟଙ୍କିଆ ଘର (ଛାତ ଥିବା ଘର) ଭଡ଼ା ନେଇଥିଲେ । ମାମୁଁଘର ବଢ଼େଇଠୁ ଦିଟା ଖ୍ଲୋଟ ଖ୍ଲୋଟ ଖଟ ଆଣି ସେ ଘରେ ପକେଇ-ଥିଲେ ।

ଟିପାର୍ଟି ଭାଙ୍ଗିବାପରେ ରନାଦେବୀଙ୍କୁ ଧରି ରିକ୍ସାରେ ବସିବା ପର୍ଯ୍ୟନ୍ତ, କୁଆଡିକି ଯିବେ, କୁଆଡେ ରହିବେ, ଦାସଙ୍କ ମୁଣ୍ଡରେ ସେ ଭାବନା ନ ଥିଲା । ଏ ପର୍ଯ୍ୟନ୍ତ ସେ ଅଫିସଘର

ବାରଣ୍ଡାରେହିଁ ଶୋଉଥିଲେ; ହୋଟେଲରେ, ମେସରେ ଖାଉଥିଲେ

ରିକ୍‌ସାରେ ବସିବା ପରେ ହନାଦେବୀ ପଚାରିଥିଲେ, କ'ଣ ଧର୍ମଶାଳାକୁ ଯିବା ?

ଦାସେ କ'ଣ କିଛି କହିବାକୁ ଯାଉଥିଲେ, ଭଣୋଇ କହିଲେ, କାହିଁକି ଆମର କ'ଣ ଘର ନାହିଁ ?

ରିକ୍‌ସାବାଲାକୁ କହିଲେ—ଚାଲରେ, କେନାଲ୍ କୂଳ ବଡ଼ ସାହିକୁ ଚାଲ ।

ଦାସେ କ'ଣ ପଚାରିବାକୁ ଯାଉ ଯାଉ ଭଣୋଇ କହିଲେ, ଚୂପକର ଦନୁ । ମୁଁ ଯାହା କରୁଚି, ଠିକ୍ କରୁଚି । ତା' ସଙ୍ଗେ ସଙ୍ଗେ କହିଲେ, କାଲି ଚନ୍ଦ୍ରର ବାହାଘର । ପରଶୁ ତୁମ ଦହିଁକି ନିମନ୍ତ୍ରଣ କରିଚି, ତୁ ଯା ନ ଯା-ମୁଁ କିନ୍ତୁ ଶଳାଭାଉଜଙ୍କୁ ନେଇଯିବି ।

ଦାସେ କହିଥିଲେ,—ସେଥିରେ କ'ଣ ଅଛି, ପରଶୁ ନିମନ୍ତ୍ରଣ ଯେତେବେଳେ କରିଚି, ମୁଁ ବି ଯିବି । ଚନ୍ଦ୍ରକୁ ମୋ ସହିତ ବାହା ଦେଲାନି ବୋଲି କ'ଣ ମୁଁ ଅଭିଆଡ଼ି ରହିଗଲି ନା ଚନ୍ଦ୍ରଠୁ ଖରାପ ପାଣିକୁ ମୁଁ ପାଇଲି ? ପରଶୁର ଇଚ୍ଛା ହେଲା ନାହିଁ, ତା' ବୋଲି ତ ମୁଁ ତା'ର ଶତ୍ରୁ ନୁହେଁ କି ମୋର ସେ ଶତ୍ରୁ ନୁହେଁ ! ଦୁହେଁ ପରସ୍ପରର ବନ୍ଧୁ । ମୁଁ ଖାଲି ଜାଣିବାକୁ ଚାହେଁ, ଚନ୍ଦ୍ର ମା ଏ ବାହାଘରେ ଖୁସି କି ନା ? ସେ ଏଇ ବାହାଘରେ ଉପସ୍ଥିତ ଅଛନ୍ତି କି ନା ?

ଭଣୋଇ କହିଥିଲେ, ପରଶୁ ଯାହା କଲାନା, ନାଣୀ ଅମର ଅମଙ୍ଗ ହେବାପାଇଁ ବାଟ ନ ଥିଲା ।

ଠିକ ଅଛି କହି ତା'ପରେ ଦାସେ ହନାଦେବୀଙ୍କ ସହିତ କଥାବାର୍ତ୍ତା କରିଥିଲେ ।

ଭଣେଇ ଘର ଦେଖେଇ ଦେଇ ତାଙ୍କ ପିଠେଇ ଘରେ ଅଲୁଅ ଲଗେଇ ଦେଇ କହିଥିଲେ, ଏଥର ହାଲକା ଅସ । ଏଇ ହେଲା ତୁମର ଆବାସସ୍ଥଳ । ମୁଁ ଯାଉଚି, କାଲି ଗୁରୁବରଠାବେଳେ ଆସିବ ।

ତା' ଆର ଦନ ବଡ଼ଭୋରରୁ ଦାସେ କବାଟ ଖୋଲି ଗୃହ ଅଙ୍ଗକୁ ଗୃହିଁଥିଲେ । ଦାଣ୍ଡରେ ଗୁଡ଼ାଏ ମାଇପି ।

ଏ ଘରକୁ ଲକ୍ଷ୍ୟ କର ଠୁପୁରୁ ଠାପର ହେଉଥିଲେ । କାହା ତୁଣ୍ଡରେ—ନୂଆ ହେଇ ବାହାହେଇ ଆସିଚନ୍ତି, କାହା ତୁଣ୍ଡରେ ନୂଆ ବାହାହେଲା ଭଳି ତ ଦେଖାଯାଉ ନାହାନ୍ତି, ଅଜ କୁଠି ବୋଧେ ଗୃହସ୍ତି କରୁଥିଲେ, ଏବେ ବଦଳି ହୋଇ ଅସିଚନ୍ତି, ମରଦଟି ପତଳାକୁ ଇସ୍ତ୍ରୀଟି ବି ପତଳା, ବେଶ ସାଜୁଚି; ଅଜ କାହା କାହା ମୁହଁରେ—ନାଇଁଲୋ ଶଶିବେ.ଉ, ହକ୍ଲଠା ଭାଇଭଉଣୀ······ଇମିତ ନାନା କଥା ଶୁଣିଥିଲେ ସେ ।

ଠିକ ଏଠିକି ଅସିବାର ତୃତୀୟ ଦନ ଗୁଡଗାଡ଼ିରେ ସେମାନେ ବାହାରଲେ ହନମୁନ ପାଇଁ ଗୋପାଲପୁରକୁ ।

ଗୋପାଲପୁରଠୁ ଦାସଙ୍କ ନିଜ ଗାଁ ବୋଲି ଯେଉଁ ଗାଁଟି ବଣ ଜଙ୍ଗଲର ଢେର ଭିତରେ ଥିଲା, ସିଠିକି ସେମାନେ ବାହାର ଥିଲେ । ଠାକ୍‌ସି ସେ ରାସ୍ତାରେ ଯାଇ ପାରନ ଥିଲା । ଶଗଡ଼ଗାଡ଼ି ଭଡ଼ା କର ସେମାନେ ଦୁର୍ଗମ ରାସ୍ତାକୁ ପାର ହୋଇଥିଲେ । ଶଗଡ଼କୁ ଯେଉଁ ଜନ୍ତୁ ଦଇଟି ଟାଣୁଥିଲେ, ସେଗୁଡ଼ାକ ଗୋରୁ ନୁହଁନ୍ତି, ପୋଢ଼ । ଏଡ଼େଠାମାନ ସିଂଘ । ବନାଦେବୀ ପ୍ରଥମେ ସ୍ୱାଙ୍କୁ ଦେଖି ଚମକ ପଡ଼ିଥିଲେ । ଏଗୁଡ଼ାକ କ'ଣ, ପ୍ରଶ୍ନର ଉତ୍ତର ଦେଇ ଦାସେ "ମହିଷାସୁର ମର୍ଦ୍ଦିନୀ ମା ଦୁର୍ଗା"ଙ୍କ କଥା କହି-ଥିଲେ ଏ ଯେଉଁ ମହିଷମାନଙ୍କ ଅସୁର, ସେଇ ମହିଷ ଜାତୀୟ ଏଇ

ଜନ୍ମ । ମହିଁଷି ପୁଂଲିଙ୍ଗରେ ପୋଢ଼ । ରନା ଦେବୀ ମା ଦୁର୍ଗାଭଳି ଶଗଡ଼ ଗାଡ଼ି ଭିତରେ ବସି ପାହାଡ଼ପର୍ବତର ସବୁଜ ଶ୍ରୀ ଉପଭୋଗ କରୁଥିଲେ ।

……ଶାଶୁ ଘର ଟାଁରେ ରନା ଦେବୀ ରହିଥିଲେ ମାତ୍ର ଦୁଇଟି ଦିନ । ଅମ୍ବୁ ଅମ୍ବୁ ପଡ଼ିଶା ଘର ଝିଅ ଗଉଡ଼ୁଣି, ହେଉଥିଲେ ଦୀନାର ମାଇକିନିଆଁ କହି ଗୋଠୁଟେ ମାଇକିନିଆଁଙ୍କୁ କୋଡ଼ରେ ମାଟି ଚାଂପି ଆଣିଲାଭଳି ଚାଂପି ଆଣିଥିଲା । ରନାଙ୍କ ହାତ, ଗୋଡ଼, ନାକ, କାନକୁ ଦେଖି ସମସ୍ତଙ୍କ ତୁଣ୍ଡରୁ ଶୁଣା ଯାଉଥିଲା… ଆଲୋ କିଛି ନାହିଁ ଲୋ । କାନ ଲଙ୍ଗଳା, ବେକ ଫୁଙ୍ଗୁଳା, ନାକ କଥା ତ ଛାଡ଼……ହଇରେ ଦିନା ! ଇଏ କି ମାଇକିନିଆଁ କରେ ?

ବୋହୂକୁ ଦେଖି ଶାଶୁଙ୍କର ବୁକୁ କୁଣ୍ଢେ ମୋଟ । ପୁଅ ବାହାଘରକୁ ନ ଡାକୁ ପଛେ, ବାହାହେଲା, ବୋହୂଟିଏ ବୋଲି ଘରକୁ ଆସିଲା, ସେତିକି ତାଙ୍କଠି ଅଧିକ ।

ଭାଉଜ ବୋଲି ଡାକିବା ଝିଏ ଆସି, ରନାଦେବୀଙ୍କ ପାଖରେ ଘେରି ବସିଲେ । ସଙ୍ଗାତ ମଇତର ଘର ପିଲାମାନଙ୍କ ଆଦର କହିଲେ ନ ସରେ । କିଏ ଡାକିଲା ମାଇଁ, କିଏ ଡାକିଲା ଖୁଡ଼ି । ଭାଉଜ ଡାକଟା କିନ୍ତୁ ବେଶି । ମଝିରେ ବୁ ଦେଇ ଘର ଭାମାଟା ଥାଇ ଠିକିଏ ଠିକିଏ ଥଟ୍ଟା ଟାପରା କରି କହେ, ଇଏ କିସ ବା, ବୋହୂଟା ନୁକୁନା । ମୁଣ୍ଡରେ ପଣତ ଦିଉନି ।

ଝିଅ ଶାଶୁଘରୁ ପ୍ରଥମ ପାଳିରେ ବାପଘରକୁ ଫେରିଥାଏ । ତେଣୁ ତା ଅନୁଭୂତିଟା ସଜ । ଶାଶୁଘରକୁ ଗଲା-ବେଳେ ସେ ତା ମା ଖୁଡ଼ୀଠୁ ଏଇ ପଣତଦିଅ, ନ ଦିଅ ଲାଗି କେତେ ଗାଳିମାଡ଼ ଖାଇଛି । ବହୁ ଦିନ ଧରି ଟ୍ରେନିଂ ନବାକୁ ପଡ଼ିଥିଲା ତାକୁ । କାନରେ ଝୁମ୍ପି, ଗୋଡ଼କୁ ପାଞ୍ଜୁ, ନାକରେ

ଧାଇ ଧାଇଁଟା ଡମ୍ବ, ଅଙ୍ଗୁଠିରେ ମୁଦି ପିନ୍ଧି ଯାଇ ମଧ୍ୟ ଶାଶୁଙ୍କଠାରୁ ଏତେ ବାହୁନା ! ଅଜି ଏ ଧନାଭିଉନା କନ୍ୟାଁ...ବୋହୂ ଭଳି କ'ଣ ଦେଖାଯାଉଚି ?

ବୋହୂକୁ ଦେଖି ଶାଶୁ ଭାବୁଥିଲେ ସତେ କି ଲକ୍ଷ୍ମୀ ଠାକୁରାଣୀ ଅସିଚନ୍ତି । ଶ୍ୱଶୁରଙ୍କ ଖାଲି ଦୋକାନ ହାଟକୁ ଦଉଡ଼ ଦଉଡ଼ ନାଟକଦମ । ମାତ୍ର ଦିଟି ଦିନ । ଅଜି ତିନି ଗୁରୁ ଦିନ ରହିଲେ ସଂସାରରେ ଯେତେ ପିଠାପଣା ଅଛି, ସବୁ ଯିମିତି କରି ପୁଅବୋହୂଙ୍କ ମେଣ୍ଟେଇ ଦିଅନ୍ତେ । ଅରିଷା, କାକରା, ଲଡ଼ୁ, ମୁଗପୁଳିଠାରୁ ଅରମ୍ଭକରି ଅଣ୍ଡୁଟେଇ ଚକୁଲି ପର୍ଯ୍ୟନ୍ତ ସବୁ ପିଠାପଣା କରିଦେବାକୁ ଶାଶୁ ଶ୍ୱଶୁରଙ୍କ ଇଚ୍ଛା ।

ରାମ କେଉଟକୁ ଶ୍ୱଶୁର ଡାକି କହନ୍ତି, ଭାଇ ! ଟିକିଏ ପୋଖରୀରେ ଜାଲଟା ନେଇ ପକାନ୍ତୁ, ମାଛ ଦିଟା ହେଲେ ତୁଣ୍ଡରେ ଲଗାନ୍ତେ ।

ଦୀନବନ୍ଧୁ ଦାସଙ୍କ ନାଁ ଶୁଣିଲେ ଗାଁର ଯେ କୌଣସି ଲୋକଙ୍କର ତୁଣ୍ଡରୁ କେଉଁ କଥାରେ ହେଲେ ନାହିଁ ଶବ୍ଦ ବାହାରେ ନି । ତେଣୁ ରାମ କେଉଟର ଯେତେ କାମ ଥିଲେ ମଧ୍ୟ ନାହିଁ କରେ ନା । ଜାଲ ଧରି ପୋଖରୀକୁ ବାହାରେ ।

କିଏ ପରିବା ଦିଏ, କିଏ ଶାଗ ଦିଏ, କିଏ ବା ଦୁଧ, ଘିଅ ଟିକିଏ ଟିକିଏ ଦେଇ ଯାଅନ୍ତି ।

ଦାସେ ଅଜି ବନାଦେବୀ ଦାଣ୍ଡରେ ଏକା ସାଙ୍ଗରେ ବାହାରିଲେ, ପୁରୁଷମାନେ ଲାଜରେ ଘର ଭିତରେ ପଶିଯାଅନ୍ତି । ନଇଲେ ଦଶବାର ହାତ ଦୂରରେ ଅଡ଼େଇ ହୋଇ ଠିଆ ହୁଅନ୍ତି । କିଏ କିଏ ଅଖି ବୁଜି ଦିଅନ୍ତି । ବନାଦେବୀ ତାଙ୍କ ବାଟ ଦେଇ କିଛି ବାଟ ଗୁଲିଗଲା ପରେ, ଅଖିକି ପିଟେଇ, କଣେଇ କଣେଇ ଚାହାଁନ୍ତି ।

ଅଜି ସବୁ କଥା ମନେପଡ଼ୁଚି ରନାଦେବୀଙ୍କର । ଏକଥା ବି ମନେ ପଡ଼ୁଚି, ଠିକ ଅସିବା ଧନ ପାବନା କନ୍ଦର ସ୍ତ୍ରୀ ଅସି କହିଲା, ନାଇଁ ଗୋସେଇଁ, ମୋ ଘରକୁ ବୋହୂ ନ ଗଲେ ଘୁଞ୍ଚିବନି । ମୋ ଘରେ କିଛି ନ ଖାଅ ପଛେ, ଗୃହଳ ଭଜା ଚାଶି ଭଜା ଗଣ୍ଡେ ଖାଇଯିବେ । ମୋ ଲାଗି ସେତିକ ସରଗଠୁ ବଳି ।

ବର୍ଷକ ପରେ ରନାଦେବୀଙ୍କ କାନରେ ଥିବା ଝୁଂପିର ଝୁମ୍ପୁରଗୁଡ଼ିକ ଗୋଟିକ ପରେ ଗୋଟିଏ ଛିଣ୍ଡି କୁଆଡ଼େ କମିତ ପଡ଼ି ଗଲା ଭଳି, ରନାଦେବୀ ଜୀବନର ଛନ୍ଦ ସେହିଭଳି ହରେଇ ବସନ୍ତି । ତାଙ୍କ ବକ୍ଷଜର ବଣ୍ଡିଳତା, ବାହୁଯୁଗର ବଳୟ, ନିତମ୍ବ ଦୋଳନର ଆକର୍ଷଣ, ନେତ୍ରାନ୍ତର କଟାକ୍ଷ ସବୁ ଯିମିତ ମନେ ହୁଏ ସେ କ୍ରମେ କ୍ରମେ ହରେଇ ବସୁଚନ୍ତି ।

ରତନ ବୋଉଠୁ ଆରମ୍ଭ କରି ସାଇପଡ଼ିଶା ସମସ୍ତେ ଅସି କହନ୍ତି, କଲେ ସୁନା, କ'ଣ ତୋର ହାଡ଼ ଦେଖାଗଲାଣି ! ଖାଉନୁ କି ?

ରନାଦେବୀ ମନର ବେଦନାକୁ ମନରେ ଲୁଚେଇ କଥାକୁ ବାଆଁରେଇ କହନ୍ତି, ମାସେ ହେଲା ଝାଡା ହେଉଚି ନାଣୀ, ଯେତେ ଔଷଧ ଖାଇଲେ ବନ୍ଦ ହେଉନି । ଝାଡା ନାଁ ଧରିଲେ, ଝଡ଼ିଯିବାର କାରଣ ଯଥେଷ୍ଟ ଅଛି ବୋଲି ରତନ ବୋଉ ହେଉବକା ଅଉ କିଛି ନ ପଚାରି କହନ୍ତି, ହଁ ଲୋ ମା, ମଳ ଗଲେ ବଳ ଯାଏ । ଡାକ୍ତରୀ ଔଷଧ ଖାଅନା ବୋହୂ, ପିଠିରେ କିଛି

ହବନି । ଆମ ଦେଶୀ ଅଭ୍ୟାସକୁ ଧର । ଚୂଡ଼ା କଦଳି କର ଦି ଦିନ ଖାଇଲ୍ଲ ଦେଖ ଝାଡ଼ା ବନ୍ଦ ହବନି ? ବାପା ଯିଏ ଯିଏ ବନ୍ଦ ହବ । ନଇଲେ ବୋହୂ, ଗୋଟିଏ କାମକର । କଞ୍ଚା କଷିବେଲକୁ ଅଣ୍ଟି ପୋଡ଼ି ତାକୁ ପାଣିରେ ଗୋଳେଇ ପିଇ ଦେ କ ସବୁ ବନ୍ଦ । ସନେଇ ବୋଉ କହନ୍ତି, ନା ମ ଖୁଡ଼ୀ, ମତେ ବ ଇମିତଛା ହଉଥିଲା । ତା' ବାପା ଅଣ୍ଟି କ ଦାଣ୍ଠ ବଟିକା ଦେଲେ କେଜାଣି, ତା ଆଉ ଦିନକୁ କିଛୁ ନାଇଁ । ଆଜ ଆସନ୍ତୁ, ତାଙ୍କୁ ପଚାରିବ ।

କିଏ ଗିନା, କିଏ ତେଲ ଶିଶି ଧରି ଆସି ଥାଆନ୍ତି । ଶନାଦେବୀଙ୍କ ଦେହର ଅବସ୍ଥା ଦେଖି, ମାଗିବାଣ୍ଠା ଅସୁନ୍ଦର ହବ ବୋଲି ଭାବି ଫେରି ଯାଆନ୍ତି ।

ଇତମଧ୍ୟରେ ଶନାଦେବୀଙ୍କ ଗାଁ ଅଡ଼ର ଜଣେ ଲୋକ, ଶନାଦେବୀ ଯାହାକୁ କକା ବୋଲି ଡାକନ୍ତି, ସେ ଆସିଥିଲେ । ମୂର୍ଚ୍ଛନାକୁ ଦେଖି ସେ ବିସ୍ମିତ ହୋଇ ଉଠିଲେ । ଦୀନବନ୍ଧୁ ଦାସଙ୍କ ଆଗରେ ଆରମ୍ଭ କଲେ ଶନାଦେବୀଙ୍କ ପିଲାଦିନର ସ୍ୱାସ୍ଥ୍ୟ କଥା । ତାକୁ ଯେତେବେଳେ ପାଞ୍ଚବର୍ଷ, ଦେହଣ୍ଠା ତାର ଏତେ ମୋଟା ଦେଖାଯାଉଥିଲା । ତା ବୁଢ଼ାବାପା ତାକୁ କହୁଥିଲେ, ଗଣ୍ଡି କ ଓଜନ ହେଇଚ କରେ ! ଏଡ଼େ ଏଡ଼େ ହାତ, ଏଡ଼ଣ୍ଠା-ମାନ ଗୋଡ଼ । ବାହାହେଲା ବେଲକୁ ଦହ କମିଥ ଥିଲା କହ୍ହ ପାରିବନି, ଆଠବର୍ଷ ହେଲା ତାକୁ ଦେଖି ନ ଥିଲି । ଆଠବର୍ଷ ତଳେ କିନ୍ତୁ ଇଏ ତ ବେଶ ମୋଟା ଥିଲା ।

ଦାସେ କହନ୍ତି, ଉପରଣ୍ଠା ମୋଟା ପତଳାରେ କିଛି ଯାଏ ଆସେନା, ଭିତରର ଶକ୍ତି ଯାହାକୁ କହନ୍ତି ସେଇ "ଭାଇଟାଲିଟି" ଥିଲେ ଗଲା । ଘରେ ଖାଇବାର ତ ଜଣାନାହିଁ । ଧଡ଼ିକନି ଟଂଗା ହୋଇଥିବା ଖାଦ୍ୟପେୟର ଲୁଟିନ୍‌ଣ୍ଠାକୁ ଦେଖେଇ ଦିଅନ୍ତି । ଏଇ ଦେଖନ୍ତୁ ଏଥିରେ ଆଇରନ୍, ଏଥିରେ କାଲସିୟମ୍, ଏଥିରେ ଚର୍ବି, ଏଥିରେ ପ୍ରୋଟିନ୍ । କ'ଣ ନ ଅଛୁ, ସବୁ ଅଛୁ । ଘରକୁ ସବୁ ତ

ଅସୁଛି । ଆପଣ ତାଙ୍କୁ ନିଜେ ପଚାରୁନାହାନ୍ତି । ସବୁ ରନ୍ଧାବଢ଼ା କରି ନିଜେ ଦିଅନ୍ତି ସେ । ପରଙ୍କୁ ଖୁଆଇ, ନିଜେ ଖାଏ ନା, ତା ଭଳି ମୂର୍ଖ ଦୁନିଆଁରେ ନାହିଁ । ତୁମ ମୂର୍ଚ୍ଛନା ତ ଅଶିକ୍ଷିତା ନୁହନ୍ତି, ସୁଶିକ୍ଷିତା । ଶିକ୍ଷିତ ବାପମାଆଙ୍କ ପାଖରେ ବଢ଼ି ଆସିଚନ୍ତି । ସ୍କୁଲରେ ଡୋମେଷ୍ଟିକ୍ ସାଏନ୍ସ (ଗୃହବିଜ୍ଞାନ) ବିଷୟରେ ଭଲ ନମ୍ବର ରଖିଥିଲେ ବୋଲି ସିଏ ନିଜେ ସାଙ୍ଗ ପିଲାଙ୍କ ଆଗରେ କହିବାର ଶୁଣିଚି । ତଥାପି ଯଦି ନିଜ ଶରୀରକୁ ନିଜେ ନ ଗଢ଼ନ୍ତି, ସେଥିରେ ମୋର ଦୋଷ କ'ଣ ?

କଳାଲେଖା ବ୍ୟକ୍ତିଜଣକ ଏ ସବୁ ହିସାବ କିତାବର ଫର୍ଦ୍ଦ ପଢ଼ି ସାରିବାପରେ, ଆଉ କୌଣସି ଯୁକ୍ତି ନ କରି, ଜଳବାୟୁକୁ ଦୋଷ ଦେଇ କହନ୍ତି, "କେବଳ ମୂର୍ଚ୍ଛନା ନୁହେଁ ଦାସବାବୁ, ଆମ ଆଡ଼ର ଯେତେ ଝିଅ ଇଆଡ଼କୁ ଆସିଚନ୍ତି, ବର୍ଷେ ଦିବର୍ଷ ପରେ କାହିଁକି କେଜାଣି ଇମିତି ହେଇ ଯାଉଚନ୍ତି । ଏଠା ପାଣିରେ ସେମାନଙ୍କର କିଛି ଜୀର୍ଣ୍ଣ ହେଉନି ।" ମୂର୍ଚ୍ଛନାକୁ ଲକ୍ଷ୍ୟ କରି କହନ୍ତି—ମୂର୍ଚ୍ଛନା, ତୁ ଆଜିଠୁ ଗୋଟେ କାମ କର । ପ୍ରତିଦିନ କେଟଲିଏ ପାଣି ଗରମ କରି ତାକୁ ଥୁରେଇ ଭିତରେ ରଖି ଦେଉଥିବୁ । ସେଇଥିରୁ ମନେ ମନେ ଖାଇ ସାରିଲେ ପିଉଥିବୁ । କିଛି ଦିନ ଇମିତି କରି ତ ଦେଖି...ମୁଁ ଭାବୁଚି ତା ପରେ ତୋର ଜୀର୍ଣ୍ଣଶକ୍ତି ବଢ଼ିବ । ଯାହା ବା ଖାଅ, ଯଦି ଜୀର୍ଣ୍ଣ ହୋଇ ଦିହରେ ନ ଲାଗେ ତାହାହେଲେ ସେ ସବୁ ଗିଳିବାରେ ଲାଭ କ'ଣ ?

ଦାସେ ଜଣେ ପ୍ଲେଟକାଟିଆ ଡାକ୍ତର...ପାଠ ପଢ଼ିଲା-ବେଳେ ଅର୍ଥାତ୍ ହାଇସ୍କୁଲ୍ ଛାତ୍ର ଥିଲାବେଳେ ସେ ସ୍କୁଲଠୁ ତିନିମାଇଲ ବାଟରେ ଥିବା ଜଣେ ଡାକ୍ତରଙ୍କ ଘରେ ଭ୍ରାତୃବନ୍ଧନରେ ନିଜକୁ ବାନ୍ଧି ରଖିଥିଲେ ସେ । କୋଉ ଏକ

ଡ୍ରାମାରେ ଏଇ ଚିକିତ୍ସକ ତଥାକଥିତ ଡାକ୍ତର ଜଣେକ ବଡ଼ଭାଇ ଭାବରେ ଅଭିନୟ କରିଥିଲେ । ଦାସେ ଛୋଟ ଥିଲେ, ତେଣୁ ତାଙ୍କର ଛୋଟ ଭାଇ ଭାବରେ ଅଭିନୟ କରିଥିଲେ । ଭାଇ ଭାଇ ଡାକବାଟା ସେଇ ମଂଚ ଉପରେ ସରିଯିବା କଥା, କିନ୍ତୁ ଡାକ୍ତର ଜଣଙ୍କ ତାଙ୍କୁ ଜୀବନରେ ମଧ୍ୟ ଛୋଟ ଭାଇ ଭାବରେ ଗ୍ରହଣ କରିନେଲେ ।

ଚିକିତ୍ସାଶାସ୍ତ୍ରରେ ଗୃହେତି ପ୍ରଣାଳୀ ଯଥା—ଏଲୋପ୍ୟାଥି, ହୋମିଓପ୍ୟାଥି, ଆୟୁର୍ବେଦ, ୟୁନାନୀ ଅଛି ବୋଲି ଏବେ ସିନା ସେ ଜାଣିଲେ, ସେତେବେଳେ ସେ ଜାଣିଥିଲେ, ଔଷଧ ତ ଔଷଧ, ଚିକିତ୍ସା ତ ଚିକିତ୍ସା ।

ଏହି ଡାକ୍ତର ବଡ଼ଭାଇ ଥିଲେ ଜଣେ ହୋମିଓପ୍ୟାଥିଷ୍ଟ । ଖାଲି ତ ସିଏ ନ ଥିଲେ, ତାଙ୍କ ଘରର ସମସ୍ତେ ଥିଲେ ଏଇ ବିଦ୍ୟାରେ ଧୁରନ୍ଧର । ଚିନି ଗୁଣ୍ଡିରେ, ଛୋଟ ଛୋଟ କାଚ ଶିଶିରୁ ଟୋପେ ଦିଟୋପା ପାଣି ପାଣି ଔଷଧ ମିଶେଇ ପୁଡ଼ା ବାନ୍ଧନ୍ତି, ଚିନି ଗୁଣ୍ଡି ନ ଥିଲେ ରୋଗୀକି କହନ୍ତି, ଖାଲି ଶିଶି ନେଇ ଆସିବୁ, ଔଷଧ ଦିଆଯିବ । ଶିଶି ଆଣିଲେ ମଧ୍ୟେ ପାଣି ଭର୍ତ୍ତି କରି, ଶିଶି ବାହାରେ ଅଠାରେ ଗୋଟେ ଲମ୍ବା କାଗଜ ଲଗେଇ, ସକାଳେ ଏ ଶିଶିରୁ ଏତିକି, ସନ୍ଧ୍ୟାରେ ଏତିକି ଖାଇବ ବୋଲି କହିବା ଥିଲା ଏଠା ଡାକ୍ତରଖାନାର କାମ । ଦାଣ୍ଡରୁ ଛୋଟ ପିଲେ ଆସି ଥରେ ଥରେ ୟାଙ୍କର ଡାକ୍ତରଖାନାରୁ ଚିନିଗୁଣ୍ଡ ନଚେତ୍ ଚିନିରେ ତିଆରି ଗୋଲ ଗୋଲ 'ବଟିକା' ହରଣଚାଲ କରିନେଇ ଯାଆନ୍ତି ।

ବଡ଼ଭାଇଙ୍କ ପାଖରେ ବସି ବସି ଦାସେ ଏଇ ଔଷଧଗୁଡ଼ିକୁ ଗୁଡ଼ାଏ ମନେ ରଖିଥିଲେ । ନିଜ ଗାଁକୁ ଗଲେ, ଏଇଥିରୁ କିଛିଟା ଔଷଧ ନେଇ ଯାଇଥାଆନ୍ତି ।

ଥରେ ତାଙ୍କ ବୋଉର ଝାଡ଼ା ହେଉଥିଲା, ବୋଉ ଚୁଡ଼ା କଦଳୀ ଦହିକ ମିଶେଇ କଞ୍ଚୁଟା ଖାଇ ସାରିବା ପରେ ପରେ ପୁଅକୁ କହିଲେ, କ'ଣ କିଛି ଔଷଧ ଜାଣିଥିଲେ ଟିକିଏ ଦେ, ଆଜି ସକାଳୁ ତିନି ଚାରି ଥର ଝାଡ଼ା ଗଲେଣି । ଦାସେ ସେଇ ପାଣି ଔଷଧକୁ ଟିକିଏ ବୋଉ ପାଟିରେ ପକେଇ ଦେଇଥିଲେ । ଥରେ ଅଧେ କ'ଣ ଝାଡ଼ା ହେଇଥିଲା, ତା ପରେ ବନ୍ଦ । ବୋଉମାନେ ସହଜେ ପୁଅମାନଙ୍କ ପ୍ରଶଂସା କରିଥାଆନ୍ତି । ଦାସଙ୍କ ବୋଉ ଚାରିଆଡ଼େ କହି ବୁଲିଲେ ଯେ ପୁଅ ଆମର ଭଲ ଚିକିତ୍ସା ଜାଣେ । କ'ଣ ଟୋପେ ଦେଲା, ସେଥିରେ ଏକାବେଳକେ ଝାଡ଼ା ବନ୍ଦ ।

ଦାସେ ଇମିତ ଗାଁକୁ କେବେ କେବେ ଗଲେ, ଦଶ ଆଠଦିନ ରହନ୍ତି କିନ୍ତୁ ଦଶ ଆଠଦିନରେ ତାଙ୍କର ସବୁ ଔଷଧ ଶିଶି ଗାଁଟା ଯାକର ରୋଗୀ ଚିକିତ୍ସା କରି କରି ଶେଷ ହୋଇଯାଏ । ଯିଏ ଭଲ ହଉ ହଉ ହେଇଯାଏ ସେ ତାଙ୍କର ପ୍ରଚାର କରେ, ଯିଏ ଭଲ ନ ହୁଏ ସେ ତୁନି ରହେ । ଭଲ ହେବାବାଲାଙ୍କ ସୁପ୍ରଚାରରେ ସେମାନଙ୍କ କୁପ୍ରଚାର କାଟୁ କରିବ ନି ବୋଲି ସେମାନେ ମନେ ମନେ ଭାବି ନଅନ୍ତି ।

ଦାସେ କିନ୍ତୁ ଭାବୁଥିଲେ, ସେ ଲୋକଙ୍କୁ ଏସବୁ ଔଷଧ ଦେଇ ଠକାଠକି କରୁ ନାହାନ୍ତି । ଭାଇ ଯାହା ଯାହା ଯେଉଁ ଲକ୍ଷଣ ଦେଖି ଦଅନ୍ତି, ସିଏ ବି ସେଇ ଲକ୍ଷଣ ଦେଖି ସେଇ ଔଷଧ ଦେଉଚନ୍ତି । ରୋଗୀଲକ୍ଷଣ ଜାଣିବାମାନେ ଦାସେ ବଙ୍ଗଳା ଭାଷାରେ ଲିଖିତ ମେଟେରିଆମେଡ଼ିକାକୁ ଖୋଲି ବସନ୍ତି । ଯେଉଁ ଔଷଧରେ ଲକ୍ଷଣଗୁଡ଼ାକ ବେଶି ଖାପ ଖାଇଯାଏ, ସେଇ ଔଷଧ ଦଅନ୍ତି । ସେଇ ଏକ ହଜାର ଏକଶ ତିରିଶ ପୃଷ୍ଠାକିଆ ବହିଟିହିଁ ଥିଲା ତାଙ୍କର ହୋମିଓପ୍ୟାଥିକ ପାଠ୍ୟପୁସ୍ତକ । ଥୁଜା, ନାର୍ସିସାସ, ଭୋଡ଼ନାମ, ଇପିକାକ ଆଦି କେତୋଟି ଔଷଧ ତାଙ୍କର ଚମଡ଼ା ଖୋଳେଇ ବାକ୍‌ସର ସମ୍ବଳ ହେଇ ରହିଥିଲା ବହୁଦିନ ଧରି ।

କଲେଜ ଛାତ୍ର ଥିଲାବେଳେ ସେ ଆଠ ଦଶ ମାସ ପାଇଁ ଏଲୋପ୍ୟାଥିଷ୍ଟ ମଧ୍ୟ ହୋଇଥିଲେ । ଜଣେ ଡାକ୍ତରଙ୍କ ଦୋକାନରେ ସେ ନାଇତ ଯାଇ ବସନ୍ତି—ଔଷଧ ଆଶାରେ ନୁହେଁ, ତାଙ୍କ ପାଖକୁ ଡଜନୋଟି ଖବରକାଗଜ ଆସେ ବୋଲି, ପଢ଼ିବା ପାଇଁ । ଇମିତ ବସୁ ବସୁ ଦୋସ୍ତି ହୋଇଗଲା ତାଙ୍କ ସାଙ୍ଗରେ । ବନ୍ଧୁତ୍ୱ ଏତେଦୂର ବଢ଼ିଗଲା ଯେ ଡାକ୍ତର ରୋଗୀଙ୍କୁ ଦେଖିଗଲେ ଦାସଙ୍କୁ ଦୋକାନରେ ବସେଇ ଦେଇ, ଔଷଧ ବିକ୍ରୀ କରିବାର ଅଧିକାର ମଧ୍ୟ ଦେଇ ଘଣ୍ଟା ଘଣ୍ଟା ଧରି ଚାଲିଯାଆନ୍ତି । ଦାସେ ନିଶ୍ଚିନ୍ତରେ ବସି ରହନ୍ତି ଦୋକାନ ଭିତରେ । ଡାକ୍ତରଙ୍କ ପାଖରେ ଠିଆ ହୋଇ ହୋଇ ସେ ଏତିକି ମାତ୍ର ଜାଣିଥାଆନ୍ତି ଯେ ସିରପ ଗୁଡ଼ାକୁ ବିଭିନ୍ନ ଔଷଧରେ ମିଶେଇ ମିଠା ଓ ପାଣି ସୁଆଦିଆ କରାଯାଏ । ତେଲରେ ହ୍ୱାଇଟ ଅଏଲ ମିଶାଇଲା ଭଳି ହ୍ୟାକୁ ମିଶାଯାଏ । ମିକ୍ସଚର ଯେତିକି ବେଶି ହୁଏ, ତଦନୁଯାୟୀ ଦାମ ମଧ୍ୟ ବଢ଼େ । ଦାସେ ଡଜନୋଟି ଜିନିଷ ବିକ୍ରୀ କରିବାରେ ସିଦ୍ଧହସ୍ତ ଥିଲେ, ଗୋଟିଏ ମୁଣ୍ଡବଥା ବଟିକା, ଦ୍ୱିତୀୟଟି କୁଣ୍ଡିଅ ମଲମ, ତୃତୀୟ ଔଷଧଟି ସ୍ପ୍ରିଟ ବୋତଲ । ଗ୍ରାହକ ଏ ଔଷଧ ମାଗିଲା ମାତ୍ରେ, ଦାସେ ଭିତରକୁ ପଶନ୍ତି, ସିରପ ବାସକ୍, ନଚେତ ସିରପ୍ ଲେମନରୁ ମଦେ ମଦେ ପାଣିରେ ଢାଳଦେଇ, ହାତରେ ବଟିକା ଧରି ଫେରନ୍ତି । ବଟିକା ବିକ୍ରୀରୁ ଦାସେ ଡାକ୍ତରଙ୍କର ଯେତିକି ଲାଭ କରେଇ ଥାଆନ୍ତି, ସିରପ ପିଆରେ ସେତିକି ଚାଲିଯାଏ । ଲାଭ କ୍ଷତି ପ୍ରାୟ ସମାନ ହୋଇଯାଇ ଏକାଉଣ୍ଟ ଠିକ୍ ବାଲାନ୍ସକୁ ଚାଲିଆସେ । ଦାସଙ୍କ ରୋଗୀମାନେ ଭାବନ୍ତି, ଇଏ ଡାକ୍ତରଙ୍କ କମ୍ପାଉଣ୍ଡର ।

ରୋଗୀଙ୍କୁ ଦେଖିସାରି ଡାକ୍ତର କହି ଦେଇଥାଆନ୍ତି, ଦୋକାନକୁ ଆସିବ, ସେଇଠି ଇଂଜେକ୍ସନ ଦିଆଯିବ । ଡାକ୍ତର ଦୋକାନକୁ ନ ଆସୁଣୁ ଯେଉଁ ରୋଗୀମାନେ ଦୋକାନରେ

ହାଜର ହୋଇଯାଅନ୍ତି, ସେମାନେ ଦାସଙ୍କୁ ରଖେଇ ଥୋଇ ଦିଅନ୍ତି ନାହିଁ—କହନ୍ତି, କଉଁ କଂପାଉଣ୍ଡର ହେଇଚ, ଏ କାଗଜକୁ ଦେଖି ଔଷଧ ତ ଦବ, ଇଂଜେକ୍‌ସନ ତ ଫୋଡ଼ିବ, ଡାକ୍ତରଙ୍କୁ ଅପେକ୍ଷା କାହିଁକି ? ଦାସେ ଡାକ୍ତରଙ୍କ ଡାକ୍ତରି ଅଭିଧାନର ଭାଷା ବୁଝି ପାରନ୍ତି ନାହିଁ କି ଇଞ୍ଜେକ୍‌ସନ କମିତି ଦିଆଯାଏ ଜାଣନ୍ତି ନାହିଁ ।

ତେଣୁ କାଷ୍ଠିନ ବୋଲି ନ କହି ଆରମ୍ଭ କରନ୍ତି, ଡାକ୍ତର ବଡ଼ ରାଗୀ ଲୋକ, ନିଜେ ସବୁ କରିବେ, କାହାରିକି କିଛି କରିବାକୁ ଦେବେନି । ସେ ଗୃହୁଛନ୍ତି, ମୋ ପଇସାରେ କେହି ହାତ ନ ଦେଉ । ଫିସ ନେବେ, ଔଷଧ ପଇସା ନେବେ, ଇଂଜେକ୍‌ସନ ଦିଆ ଖର୍ଚ୍ଚ ମଧ୍ୟ ନେବେ । ଆମକୁ କ'ଣ ଦିଅଇ ଦେବେ ଯେ ଦବୁ ? ଦାସେ ପୁଣି ରୋଗୀ-ମାନଙ୍କୁ କହନ୍ତି, ଆରେ ଶଙ୍କର ଡାକ୍ତର ପ ଖରେ ଥିଲି···ବଡ଼ ଭଲ ଲୋକ···ସବୁ ଇଂଜେକ୍‌ସନ ମୁଁ ନିଜେ ଦିଏ । ଦିନକୁ ଅନ୍ତତଃ ଦଶ ପନ୍ଦର ରୋଜଗାର ହେଉଥିଲା···ପ୍ରକୃତରେ ତାଙ୍କ ଦୋକାନରୁ ଆସି ଅଜି ବହୁତ ପସ୍ତେଇବାକୁ ପଡ଼ୁଚି ମତେ । ଏଣ୍ଟ୍ରାଭେନ୍‌ସ ଇଂଜେକ୍‌ସନ ଗୋଟାକୁ ତିନିଟଙ୍କା, ଏଣ୍ଟ୍ରାମସ୍କୁଲାର ଗୋଟାକୁ ଏକ ଟଙ୍କା କରି ମିଳୁଥିଲା ।

ଇମିତି କଥାବାର୍ତ୍ତା କରି କରି ରୋଗୀମାନଙ୍କୁ ଦାସେ ଦୋକାନରେ ଡାକ୍ତର ଅସିବାଯାଏଁ ବସେଇ ରଖନ୍ତି । ଡାକ୍ତର ଅସିଲେ, ଚୁପ୍ ଗୃପ୍ । ଡାକ୍ତର ରୋଗୀ ଚିକିତ୍ସା କରୁ କରୁ ଆରମ୍ଭ କରନ୍ତି ରାଜନୀତିଚର୍ଚ୍ଚା । ବଡ଼ ଶ୍ରୋତା ଓ ପାଳିଆ ଦାସେ ।

ଡାକ୍ତର କହନ୍ତି, ଭାବିଚି ଏଥର ଏମ୍. ଏଲ୍. ଏ. ପାଇଁ ଠିଆ ହେବି । ଜଣେ ରୋଗୀକୁ ଲକ୍ଷ୍ୟ କରି କହନ୍ତି, କିରେ ତୁମ ସାହି ଲୋକେ ଭୋଟ ଦେବେନି ?

ରୋଗୀମାନେ ଠେକିଠାକି କହନ୍ତି ··ଆପଣ ? ଆପଣ ଯଦି ଠିଆ ହେବେ ନା, ହେଇ କହି ରଖୁଚୁ ବାବୁ, ଗୋଟେ ଭୋଟ

ଇଅଡ଼କୁ ସିଅଡ଼କୁ ହବନି । ଖାଲି ଆମର ଦାହଟାମାନେ ଭଲ ଥିଲେ ହେଲା ।

ଡାକ୍ତର କହନ୍ତି, ପରୁଆ ନାହିଁ । ଦାହକଥା ମୁଁ ବୁଝିବି । କିଣିବାକୁ ପଇସା ନ ଥିଲେ, ମତେ କହିବ, ସାମ୍ପଲ ଔଷଧ ଦେବି । ଦାସଙ୍କୁ କହନ୍ତି, କହୋ ପ୍ରଚାର କରିବ ତ ?

ଦାସେ କହନ୍ତି···ପ୍ରଚାର ? ସେଇଟା କ'ଣ ବାକି ଅଛି ? ଆପଣଙ୍କୁ କିଏ ନ ଜାଣିଚି, ନ ଚିହ୍ନିଚି ଯେ···ଯୁଠି ରୋଗୀ ଆପଣ ତ ସେଇଠି । ଆପଣଙ୍କ ବିରୁଦ୍ଧରେ କିଏ କ'ଣ ଠିଆ ହେବାକୁ ସାହସ କରିବ ? ମୋର ମନେ ହେଉଚି, କାହାର ସାହସ ହେବନି । କାହାର କ'ଣ ପଇସା ମାହାଳିଆ ପଡ଼ିଛି ?

କ୍ରମେ କ୍ରମେ ଦୋକାନରେ ରୋଗୀଙ୍କ ସଂଖ୍ୟା ବଢ଼େ, କିନ୍ତୁ ଡାକ୍ତରବାବୁଙ୍କ ଗପ ସରେନି ।

ସାତ ଆଠଟି ଛୁଆର ବାପା ତଥାପି ସେ ଯୁବକ । ରାଜନୀତି ଚର୍ଚ୍ଚା ଭିତରେ ଥରେ ଥରେ ଟୋକୀ ଗପ ମଧ୍ୟ ପଡ଼େ । ସେତିକି ମଧ୍ୟ ଆରମ୍ଭ ହୁଏ ଡାକ୍ତରବାବୁଙ୍କ ଅଡ଼୍ଡା । ଦାସେ କେବଳ ମଝି ମଝିରେ ହଁ ଭରି, ସଚେତନ ଅଧ କେତୋଟି ଶବ୍ଦ ପ୍ରୟୋଗ କରି ଡାକ୍ତରବାବୁଙ୍କ କଥାକୁ ସମର୍ଥନ କରନ୍ତି, ତାଙ୍କୁ ଉତ୍ସାହିତ କରନ୍ତି । ଡାକ୍ତରବାବୁ ମାତି-ଯାଆନ୍ତି କଥାରେ । ରୋଗୀମାନେ ଠିକ୍‌ଏ ବ୍ୟସ୍ତ ହୋଇପଡ଼ିଲେ, ହଁ, ତୋ ନାଁ କ'ଣ କହିଲୁ ବୋଲି ପଚାରି ଦେଇ କାଗଜ କଲମ ଧରି ପ୍ରେସ୍‌କ୍ରିପ୍‌ସନ୍ ଟିପିବାକୁ ଉଦ୍ୟତ ହୁଅନ୍ତି । ରୋଗୀ ଉନ୍ମୁଖ ହୋଇ ନାଁ କହିଦେଇ ସାରି କେବଳ ତାଙ୍କର ହାତକୁ ଚାହିଁ ରହି ରହି ମୂକ ପାଲଟିଯାଏ ।

ପୁଣି କଥା—ଦେଖି ଏଥର । ଆର ଥର ହଟେଇ ଦେଲ ବୋଲି ଭାବିଚ ଏଥର ହଟେଇ ଦବ ନା ? ଏଥର ତାକୁ ଇମିଛ

ଘଣ୍ଟାରେ ଯୋଚ ଦେବ ଯେ ଖାଲି ପେଲ୍‌ଥିବ । ଆଉ ଥର ତ ଚାପ ଖାଇଛ ।

ଦାସେ ପଚାରନ୍ତି—କ'ଣ ଖାଇଛ ?

—ଆଜ କ'ଣ ଖାଇବ ? ଯୋତା ମାଡ଼ । ନଈ ବାଲିରେ ମୋର ସଭା ହେବ ବୋଲି ମୁଁ ଲିଫଲେଟ ବାଣ୍ଟି, ମାଇକ ବୁଲେଇ ପ୍ରଚାର କଲି, ସେ ଶଳା ଯାଇ ମୋ ଲୋକଙ୍କୁ ନେଇ, ଦେଖିଲି ସଭାରେ ବକ୍ତୃତା କରି ଲାଗିଛି । ମୁଁ ପହଁଚିଲା ବେଳକୁ, ମୋର ବାରୁଦ୍ଧରେ କହୁଛି । ରାଗ ତ ଉଠିଲା, ସାଙ୍ଗେ ସାଙ୍ଗେ ସଭା ଉପରକୁ ଉଠି ପାଦରୁ ଯୋତା ଖୋଲି ଶଳାକୁ ଚଟାଲି ଚଟାଇ ସେକ ଦେଇଗଲି । ଅବଶ୍ୟ ପ୍ରତିକ୍ରିୟାଟା ଖରାପ ହେଲା, ତେବେ ଚେତଗଲା ସେ । ସେଇଟା ପୁଣି ଏଥର ଅଣ୍ଟା ଭିଡ଼ିଛି ମୋ ବାରୁଦ୍ଧରେ ଠିଆ ହେବ ! ହଉ, ଆଜ ଥରେ ଭଲକରି ଚେତେଇ ଦେବ ।

ରୋଗୀଗୁଡ଼ାକ ଏଥର ଡାକ୍ତର ଉପରେ ବିରକ୍ତ ନ ହେଇ ବିରକ୍ତ ହୁଅନ୍ତି ଦାସଙ୍କ ଉପରେ । ଏ ଲୋକଟା ଯୋଗୁଁହିଁ ଡାକ୍ତରଙ୍କ ଗପ ସରୁନି । ଦାସେ ରୋଗୀଙ୍କ ମନୋଭାବ ବେଶ୍ ଠଉରେଇ ପାରି ଡାକ୍ତରଙ୍କୁ କହନ୍ତି, ରୋଗୀମାନଙ୍କ କାମ ସାରି ଦିଅନ୍ତୁ, ମୁଁ ପାନ ଖଣ୍ଡେ ପାଟିରେ ପକେଇ ଆସୁଛି । ପାଟିଟା ଶୁଖିଲା ଶୁଖିଲା ଲାଗୁଛି ।

ଦାସେ ପାନଖିଆ ସାରି ଆସିଲାବେଳକୁ ରାତି ଦଶ ବାଜି ଯାଇଥାଏ । ଡାକ୍ତର ଦାସଙ୍କୁ ଅପେକ୍ଷା କରି ଦୋକାନରେ ବସି ରହି ଥାଆନ୍ତି । ଗପ କରିବା ତାଙ୍କର ସବୁଠାରୁ ବଡ଼ ସଉକ ।

ଦାସେ ଆସନ୍ତି, ପୁଣି ବୈଠକ ଆରମ୍ଭ ହୁଏ—ଅମୁକ ଡାକ୍ତର ଡାକ୍ତରଖାନାରେ ରାତିରେ ରୋଗୀ ଦେଖିଲାବେଳେ କୁ କୁକର୍ମ କରିଥିଲା, ଅମୁକ ଡାକ୍ତର ସହିତ ଅମୁକ ନର୍ସ ଓ ଅମୁକ

ଡାକ୍ତରଖାନାର କମିଟି ମେମ୍ବର ପୀରଭ ହେଉଥିଲ ଗୀତ ଦଣ୍ଡା ପରେ, ପଲିଟିକ୍ସକୁ ଛାଡ଼ି ଡାକ୍ତରବାବୁ ସେଇକଥା ଆରମ୍ଭ କରନ୍ତି । ଯାହା କାନରେ ଏସବୁ କଥା ପଡ଼େ, ସେ ଠାଣିହୋଇ ଟିକଏ ରହିଯାଏ ।

ଯୂାର ଭିତରୁ ଆରମ୍ଭ ହୁଏ ଖିଆପିଆ କଥା—ବାଲିହା, ଭାଲୁଡ଼, ଇଲଶ, କାଲିଆଖଡ଼ା ଚିଂଗୁଡ଼ି ପ୍ରଭୃତି କାହାକୁ କମିଟି ରାନ୍ଧିଲେ କମିଟି ଲାଗେ, କାହା ଭୋଜି ଘରର ମାଛମୁଣ୍ଡ ପାଠିକୁ ଭଲ ଲାଗିଥିଲା, ସେ କଥା ଡାକ୍ତରବାବୁ ବଡ଼ ଚମତ୍କାର ଭାବରେ ବର୍ଣ୍ଣନା କରନ୍ତି ।

ଦାସେ କହନ୍ତି, ସାତ ବାର ବାଜିଲାଣି, ଏଥର ଉଠିବା ହୁଅନ୍ତୁ ।

ଡାକ୍ତରବାବୁ କହନ୍ତି, ବାରଟା ତ ବାଜିଚି ? ବେଶି କ'ଣ ହେଇଚି···? ତା ପରେ ଆରମ୍ଭ ହୁଏ ରାତି ଅନିଦ୍ରା ହେବା କଥା··· ସେ ଗୃହକର୍ମ କରୁଥିଲାବେଳେ ଥରେ ମାସେକାଳ ଏକାଦିକ୍ରମେ ରାତି ଅନିଦ୍ରା ହୋଇ ରହିଥିଲେ । କିଛି ତ ଲାଗି ନ ଥିଲା । ରାତି ଅନିଦ୍ରା ହେଲେ, ସମସ୍ତଙ୍କ ଧାରଣା ହୃଦ୍‌ଯନ୍ତ୍ର କ୍ରିୟାରେ ବାଧା ଆସେ ! ଏ ଧାରଣା ନିତାନ୍ତ ଭୁଲ । ମସ୍ତିଷ୍କର ପ୍ରକ୍ରିୟାରେ ବାଧା ଆସିଥାଏ । ଦିନକୁ ୩ । ୪ ଘଣ୍ଟା ଶୋଇଲେ ହେଲା ।

ଗୋଟାଏ ବାଜେ···ବୈଠକ ଭାଙ୍ଗେ ନା···

ଦାସେ କହନ୍ତି, ଘରେ ବିରକ୍ତ ହେଉଥିବେଣି···ତା ଛଡ଼ା ଆମ ଘରର ବାଟଟା ଭଲ ନୁହେଁ···ସବୁଆଡ଼େ ଅନ୍ଧାର ।

ଡାକ୍ତରବାବୁ ସଙ୍ଗେ ସଙ୍ଗେ ଦୁଆର ବନ୍ଦ କରି ବାହାରନ୍ତି— ଦାସଙ୍କୁ ନିଜ ମଟରରେ ବସେଇ ତାଙ୍କ ଘରେ ଛାଡ଼ି ଦେଇ ଆସନ୍ତି ।

...ଏଇ ଦୋକାନରେ ବସି ବସି, ସିରପ ଖାଇ ଖାଇ, ମଲମ ତିଆରି କରି କରି ଏବଂ ଡାକ୍ତରୀ ଭାଷା ଶୁଣି ଶୁଣି ଦାସେ ନିଜକୁ ଏଲୋପାଥିଷ୍ଟ କରେଇ ନେଇଥିଲେ । ଜରକୁ କ'ଣ, ଖାସକୁ କ'ଣ, ମୁଣ୍ଡବଥାକୁ କ'ଣ ଔଷଧ ଦିଆଯାଏ ସେତକ ସିଏ ଭଲଭାବରେ ଜାଣନ୍ତି ।

ଦୋକାନକୁ ବହୁତ ଔଷଧ ଆସେ, ତା ହାଂଗକୁ ସାମିଲ ଔଷଧ ମଧ୍ୟ । ଉପରେ ଲେଖା ହୋଇଥିବା ନିର୍ଦ୍ଦେଶନାମାକୁ ପଢ଼ି ସେ ଥରେ ଥରେ ଉତ୍ସାହିତ ହୋଇ ଉଠୁଥିଲେ । ଏଇଟା ଖାଇଲେ ଏତେ ଓଜନ ବଢ଼ିବ, ସେଇଟା ଖାଇଲେ ଦେହର ରକ୍ତ ପରିଷ୍କାର ହେଇଯିବ ଭାବି ଭାବି ଏକାବେଳକେ ତିନି-ଚାରିଟି ଔଷଧକୁ ମିଶେଇ ସେ ପିଇ ପକାନ୍ତି ।

ପେଟର ବାୟୁ କମିବାପାଇଁ ଦୋକାନଟା ଯାକର ସବୁ ଔଷଧ ଖାଇ ସାରି ଓ ଇଂଜେକ୍‌ସନ୍ ଫୋଡ଼ି ସାରିବା ପରେ ସେ ଏଇ ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଏଲୋପାଥିଟା ଖାଲି ଧପ୍‌ପାବାଜି । ଇଥିଡ଼ୁ ସିମ୍ପ୍ଲୋଡ଼ୁ ଗୁଡ଼ାଏ ନାଁ ଲେଖି, ପ୍ରଚୁର କରି ବିଜ୍ଞାନର ଦୁହାଇ ଦେଇ ଲୋକଙ୍କୁ ଠକିବା ଛଡ଼ା କିଛି ନୁହଁ... ।

...ତା ପରେ ଦାସେ ଡାକ୍ତରବାବୁଙ୍କ ଦୋକାନବୈଠକୀରୁ ଇସ୍ତଫା ଦେଇ କବିରାଜି-ସାଧନାରେ ଲାଗନ୍ତି । ସାଧନା ଆରମ୍ଭ ହୁଏ ଦ୍ରାକ୍ଷାରିଷ୍ଟରୁ...ବୋଧହୁଏ ସାଧନା ଔଷଧାଳୟର ପୁରାତନ ଦ୍ରାକ୍ଷାରିଷ୍ଟ ସାଥିରେ ମୃତସଞ୍ଜିବନୀ ସୁରା ମିଶେଇ ଖାଇଲେ ମାସକ ଭିତରେ ମଣିଷର ତିନି ଗୁରୁ ପାଉଣ୍ଡ ଓଜନ ବଢ଼ିବ ବୋଲି ବିଜ୍ଞାପନ ଯେଉଁ ଦିନ ପଢ଼ିଲେ, ସେଇ ଦିନଠୁ ।

ସେ ଦିନ ଅଫିସରେ ସେ ବେଶିକାମ କରିଥିଲେ ବୋଲି ଅଧିକା ମଜୁରି ପାଇଥିଲେ ଦଶଟଙ୍କା । ଏହି ଅଧିକା ରୋଜଗାରଟା ଦେହକୁ ଅଧିକ ବଢ଼େଇବା ପାଇଁ ଖର୍ଚ୍ଚ ହେଉ ବୋଲି ମନେ ମନେ ଭାବି ସେତିକି ଧରି ସାଧନା ଔଷଧାଳୟର ଦୋକାନରେ ପହଞ୍ଚିଥିଲେ । ତାଙ୍କର ଧାରଣା ଥିଲା, ଯିଏ କବିରାଜି ଔଷଧ ବିକ୍ରୀ କରେ ସେ ନିଶ୍ଚୟ ଜଣେ ଆୟୁର୍ବେଦାଚାର୍ଯ୍ୟ ହୋଇଥିବେ । ତେଣୁ ପ୍ରଥମେ ଦୋକାନ ଭିତରେ ପଶି, ବିକ୍ରେତାକୁ ଅରିଷ୍ଟର ଅର୍ଥ କଣ ପଚାରିଥିଲେ । କାରଣ ଦ୍ରାକ୍ଷା ନାଁରେ ସେ ଦେଖିଥିଲେ ଦୁଇଟି ଔଷଧ ଅଛି, ଗୋଟିଏ ଦ୍ରାକ୍ଷାରିଷ୍ଟ, ଗୋଟିଏ ଦ୍ରାକ୍ଷାସବ । ବିଜ୍ଞାପନରେ କିନ୍ତୁ ସେ ଏହି ଦ୍ରାକ୍ଷାରିଷ୍ଟକୁହିଁ ପଢ଼ିଥିଲେ । ଏହି ଆସବ ଓ ଅରିଷ୍ଟ ଦୁଇଟି ଶବ୍ଦର ଅର୍ଥ ବୁଝୁ ବୁଝୁ ଦୋକାନରେ ରାତି ଆଠରୁ ଦଶ ବାଜି ଯାଇଥିଲା ।

ବିକ୍ରେତା ଇଅଡ଼ୁ ସିଅଡ଼ୁ ଗୁଡ଼ାଏ କଥା ପଚାରି ଅସଲ କଥାଟିକୁ ବାଆଁରେଇ ଦେଲାପରେ ଦାସେ ଔଷଧ କିଣିବା ପାଇଁ ନାମଙ୍ଗ ହେଇ ଫେରି ଆସିଥିଲେ । ତା ପରଦିନ କମ୍ପାନି ପାଖକୁ ଏକ ଲମ୍ବା ଚିଠି ଲେଖି ଜଣେଇଥିଲେ ଯେ ଯେଉଁ ଲୋକ ଅରିଷ୍ଟ ଓ ଆସବ କଣ କହି ପାରେ ନା, ସେଭଳି ଲୋକକୁ ଏ ସବୁ ଦୋକାନରେ ରଖିବା ଉଚିତ ନୁହେଁ । ଅଫିସରୁ ଜବାବ ଆସିଥିଲା, ଆମେ ଦୋକାନରେ ବିକ୍ରେତାଙ୍କୁ ରୋଗୀଙ୍କୁ ଔଷଧର ଅର୍ଥ ବୁଝେଇବା ପାଇଁ ରଖିନୁ, ଅର୍ଥ ପାଇବା ପାଇଁ ରଖିଚୁ, ତେଣୁ ଆପଣଙ୍କ ପ୍ରସ୍ତାବ ବିଚାର୍ଯ୍ୟ ନୁହେଁ । ଆପଣ ଯେଉଁ ଶାଖାର ବିକ୍ରେତାଙ୍କ ସମ୍ବନ୍ଧରେ ଲେଖିଛନ୍ତି, ସେ ଆମର ଜଣେ ପୁରୁଖା ଲୋକ… ତାଙ୍କୁ ସେଇଠି ରଖି ଆମେ ବହୁତ ଲାଭବାନ୍ ହେଉଚୁ ।

ଚିଠିଟି ଯେଉଁ ପ୍ୟାଡ଼ ଉପରେ ଲେଖାହୋଇ ଆସିଥିଲା, ତା ଉପରେ ଦୁଇଟି ମଣିଷ ଦେହର ଛବି ଛପାଥିଲା, ଜଣେ ଠିକ୍ ଦାସଙ୍କ ଭଳି ଆଉ ଜଣେ ଦାସଙ୍କ ପରମ ବନ୍ଧୁଙ୍କ ଭଳି ସ୍ଥୂଳକାୟ, ପୁଷ୍ଟ ସବଳ । ସେଥିରେ ଛପା ଅକ୍ଷରରେ ଲେଖା-

ଥିଲା, ଦ୍ରାକ୍ଷାରିଷ୍ଟ ଖାଇବା ପୂର୍ବରୁ ଏ ଲୋକଟି ଇମିତ ପତଳା ଥିଲା, ଦ୍ରାକ୍ଷାରିଷ୍ଟ ଖାଇବାପରେ ଇମିତ ମୋଟାହୋଇ ପାରିଛି । ଅତ ଦାସେ ଯେଉଁ ବିଜ୍ଞାପନ ଦେଖିଥିଲେ, ସେଥିରେ କେବଳ ଦ୍ରାକ୍ଷାରିଷ୍ଟ ଶିଶିର ଛବିଥିଲା...ଏଥିରେ ସେ ନିଜର ପ୍ରତିରୂପକୁ ଦେଖି ଭାବ ମୁଗ୍ଧ ହୋଇ ପଡ଼ୁଥିଲେ । ପୁଣି ସାଧନା ଔଷଧାଳୟ ଦ୍ରାକ୍ଷାରିଷ୍ଟ ପ୍ରତି ତାଙ୍କ ମନ ଆକୃଷ୍ଟ ହୋଇ ପଡ଼ିଥିଲା । ସେ ନିଜେ ନ ଯାଇ ଅନ୍ୟ ହାତରେ ସେ 'ଔଷଧ ମଗେଇ ଦିନକୁ ଦିଓଳା ଦି ଦି ଗିଲାସ କରି ପିଇଥିଲେ ।

ଔଷଧ ନ ଖାଉଣୁ ରନାଦେଈ ଔଷଧକୁ ଦେଖି କ'ଣ ଏଥିରେ ଉପକାର ମିଳେ ବୋଲି ଥରେ ପଚାରିଥିଲେ । ଦାସେ ବିଜ୍ଞାପନରେ ଯାହା ଯାହା ପଢ଼ିଥିଲେ, ମନରେ ଘୋଷି ରଖିଥିବା ଭଳି ସବୁ କହି ତାର ପ୍ରଶଂସାରେ ମୁଖର ହୋଇ ଉଠିଥିଲେ । ତେଣୁ ସାତ ଆଠଦିନ ଖାଇ ସାରିବା ପରେ, କିଛି ଉପକାର ନ ପାଇଥିଲେ ମଧ୍ୟ ରନାଦେଈ ପଚାରିବା ସଙ୍ଗେ ସଙ୍ଗେ, ଅତି ଉତ୍ତମ ଔଷଧ ବୋଲି କହି ଯେତିକି ଆଗରୁ ପ୍ରଶଂସା କରିଥିଲେ, ତାର ଦିଗୁଣରୁ ଟିକିଏ ଅଧିକ ପ୍ରଶଂସା କରି କହିଥିଲେ ସିନା, ତାଠୁ କମ୍ କରି କହି ନ ଥିଲେ ।

...ଥରେ ଦାସଙ୍କ ଅନୁପସ୍ଥିତିରେ ରନାଦେଈ ଇଥିରୁ ଟିକିଏ ପିଇଦେଇ ବେଶ ଆରାମରେ ମନର ସମସ୍ତ ଅବସାଦକୁ ଭୁଲି ଦିନ ଗୋଟିରୁ ସକାଳ ଆଠଯାଏଁ ନିଘୋଡ଼ ନିଦରେ ଶୋଇ ପାରିଥିଲେ...ଉଠି'ସାରିବା ପରେ ଦାସଙ୍କୁ କହିଥିଲେ, ହଇହେ ଏଗୁଡ଼ାକରେ ଏଡ଼େ ନିଶା ? ସେଇଥିପାଇଁ ଚିକ ଚିକ କିନି ଦିନକୁ ଦି ଗିରଥର ପିଅ ହେଉଚ ନା ?

ଥରେ ଦାସଙ୍କ ସହିତ ଜଣେ କବିରାଜଙ୍କର ଦେଖା ହୋଇଥିଲା ବାଲୁଗାଁ ଷ୍ଟେସନରେ । କବିରାଜ ଜଣଙ୍କ କୁଆଡ଼େ

ପନ୍ଦର ଦିନ ହେଲା ବାଣପୁର ଅଞ୍ଚଳରେ ଗୋଟାଏ ଛାଗଳ ଖୋଜୁଥିଲେ, ନ ପାଇ ଫେରି ଯାଉଚନ୍ତି । ଦାସେ ତୁମ ଗାଁ ପାଖରେ କ'ଣ ଛାଗଳ ବା ଛେଳିର ଅଭାବ କି ବୋଲି ପଚାରିବାରେ କବିରାଜେ ଛାଗଳାଦ୍ୟ ଘୃତ କରିବା ପାଇଁ ଯେଉଁ ଛାଗଳ ଦରକାର ହୁଏ, ତାର ଏକ ସୁନ୍ଦର ବର୍ଣ୍ଣନା ଶୁଣାଇ-ଥିଲେ । ମୋଟାମୋଟି ଭାବରେ ଦାସେ ବୁଝିଲେ ଯେ ଛାଗଳାଦ୍ୟ ଘୃତ ତିଆରି ଲାଗି, ଚଣ୍ଡୀମାନଙ୍କ ପାଖରେ ବଳି ପଡ଼ିବା ପାଇଁ ଯେପରି ଏକ ନିଖୁଣ ଛାଗଳ ଦରକାର, ସେହିଭଳି ଏକ ଛାଗଳ ଅବଶ୍ୟକ । କବିରାଜେ ସିମିତ ଗୋଟାଏ ଛେଳିର ସନ୍ଧାନରେ ବୁଲୁଚନ୍ତି ।

ଏହି ଛାଗଳାଦ୍ୟ ଘୃତ ସମ୍ବନ୍ଧରେ କବିରାଜେ ଦାସଙ୍କୁ ଯାହା ଯାହା ଶୁଣାଇଥିଲେ, ରୋଗର ଯେଉଁ ଯେଉଁ ଲକ୍ଷଣର ଅବତାରଣା କରିଥିଲେ, ଦାସେ ଭାବିଲେ, ତାଙ୍କ ରୋଗରେ ବି ସିମିତ ଲକ୍ଷଣ ରହିଛି । କବିରାଜଙ୍କ ଆଗରେ ନିଜର ପରିଚୟ ପ୍ରଦାନ କରି, ନିଜ ପେଟ, ମୁଣ୍ଡ, ଦେହ, ହାତର ଖବର ଅନ୍ତର ଦେଇ କହିଲେ, ଯଦି ଔଷଧ ଦେଇ ଏ ଗୁଡ଼ାକ ଭଲ କରିଦେଇ ପାରିବ, ତାହାହେଲେ ଧରି ନିଅ ତୁମର ଓଡ଼ିଶାରେ ନାଁ ହେଇଗଲା । କୃତଜ୍ଞତାଜ୍ଞାପନ ଶିରୋନାମାରେ ତୁମର ପ୍ରଶଂସା ସହିତ ଏକ ଲମ୍ବା ସମ୍ବାଦ ଓଡ଼ିଶାର ସବୁ କାଗଜରେ ଛାପିଦେବି । ଇଚ୍ଛା ଯଦି ଥାଏ, ଫଟୋ ପଠାଇବ, ବ୍ଲକ କରି ମଧ୍ୟ ବିନାପଇସାରେ ଛାପି ଦେବାର ବ୍ୟବସ୍ଥା କରିବି ।

ଖବର କାଗଜରେ ନାମୋଲ୍ଲେଖ ସଙ୍ଗେ ସଙ୍ଗେ ପ୍ରଶଂସା ଓ ପ୍ରଚାରର କଥା ଶୁଣି କବିରାଜେ ଅତି ଉତ୍ସାହିତ ହୋଇ ଉଠିଥିଲେ—ଲକ୍ଷଣଗୁଡ଼ାକୁ ଗୋଟାଏ ମାନ୍ଧାତା ଅମଳର ଟିପା-ଖାତାରେ ଟିପି ରଖି ସଭାତଳେ ଦାସଙ୍କ ଠିକଣାଟା ଲେଖି କହିଲେ, ସଙ୍ଗେ ସଙ୍ଗେ ପାର୍ସଲ୍ କରି ପଠେଇ ଦେବି । ଆପଣଙ୍କୁ କିଛିହେଲେ ଦେବାକୁ ପଡ଼ିବ ନାହିଁ ।

ଦାସେ କୁଆଡ଼େ କମିତ ବୁଲବୁଲି ସାର ଘରେ ଆଠ ଦଶ ଦିନ ପରେ ପହଞ୍ଚି ଦେଖିଲେ ଗୋଟେ କାଠବାକ୍ସରେ ବାକ୍ସେ ହବ ଔଷଧ । ପାଣିଆ ପାଣିଆ, କାଠୁଆ କାଠୁଆ, ଝାଣୁଆ ଝାଣୁଆ ସବୁ ରକମର ଜିନଷ । ଭିତରେ ଥିବା କାଗଜ ଫର୍ଦ୍ଦ ଖୋଲି ଦେଖିଲେ, ସକାଳ ଛଅଟାରୁ ରାତି ବାରଯାଏଁ ପ୍ରତି ଘଣ୍ଟାରେ ଏ ଔଷଧରୁ ପାନେ, ସେ ଔଷଧରୁ ଦଶଟା ବଟିକା, ଇମିତି କେତେ କଥା ଲେଖା ହେଇଚ । ଔଷଧ ଖାଇବାବେଳେ ଦିନକୁ ସେରେ ଦୁଧ, ଘିଅ ଛଟାକିଏ, ବେଦନା, କମଳା କରି ସାତ ଆଠଟା ଖାଇବା ପାଇଁ ମଧ୍ୟ ନିର୍ଦ୍ଦେଶ ଦିଆ ଯାଇଚ ସେଥିରେ ।

"ଶୁକ୍ରବର୍ଦ୍ଧନ ରସ" ବୋଲି ଯେଉଁ ଔଷଧଟିରେ ଲେଖାଅଛୁ, ଦାସେ ତାକୁ ଶୁଙ୍ଖି ଦେଖିଲେ, ବେଶ୍ ପାଟି କୁ ମିଠା । ଘିଅ ଅଉ ଗୁଡ଼ରେ କୁ ଗୋଟାଏ ଚେରକୁ କୁଟି ତା ଭିତରେ ଗୋଳେଇ ପୋଳେଇ ଗୋଟାଏ ମିଠେଇଜାତୀୟ ଖାଦ୍ୟ ତିଆର କରାଗଲ ଭଳି ବୋଧକଲେ ସେ ।

ସୁପ୍ରଶୃର ଅଶାରେ କବିରାଜେ ତାଙ୍କ ପାଖରେ ଯେତେ ଔଷଧ ଥିଲ ଘରେ ପହଞ୍ଚୁ ପହଞ୍ଚୁ ସଂଭବତଃ ଉରବାରରେ ପଠେଇଦେଇଛନ୍ତି । ଦାସେ ବ୍ଲାକ୍ସ ଖୋଲି ଦେଖିଲେ— ବାକ୍ସରେ କବିରାଜଙ୍କ ରୁଦ୍ରାକ୍ଷ ମାଳଟି ବି ରହିଯାଇଚ ।

ରନାଦେବୀଙ୍କୁ କହିଲେ, ଏଇଟିକୁ ସାଇତ ରଖ । ଶ୍ରୀସ୍ଥାନରୁ ହିନ୍ଦୁ ପାଲଟିବା ପରେ ଏଇଟି ହୁଏ ତ ବ୍ୟବହାରରେ ଲଗିବ । ରନାଦେବୀ ଦାସଙ୍କ ହାତରୁ ରୁଦ୍ରାକ୍ଷ ମାଳଟି ନେଇ ଭାବିଲେ ଅହା ବିଚାର ବହୁତ ଗାଳିଶୁଣିଥିବ ! କବିରାଜେ ପୂଜା ବସୁଦ୍ୟ ଇଲବେଳେ ଏଇଟିକି ନିଶ୍ଚୟ ଖୋଜିଥିବେ, ନ ପାଇଥିଲେ, ଘରଣୀଟି ଉପରେ ବହୁତ ରାଗିଥିବେ । ଯାଙ୍କ ଭଳି ନ ହେଇଥିଲେ ତ ଭଲ; ହୋଇଥିଲେ, ବିଚାରିର ଅବସ୍ଥା କାହିଲି ହୋଇ ଯାଇଥିବ । ଧନଯାକ ମୋ ଭଳି କାହାକୁ ନ ଜଣାଇ ଅନଶନ ଧର୍ମଘଟ କରିଥିବ ।

କ୍ଷଣ ପରେ କ୍ଷଣ, ଔଷଧ ପରେ ଔଷଧ ଯଥା—ବସନ୍ତ-କୁସୁମାକର, ଚନ୍ଦ୍ରୋଦୟ ମକରଧ୍ୱଜ, ସୁବର୍ଣ୍ଣ ପୁଷ୍ପାଶ୍ୱଗ, ନାରିକେଳ ଖଣ୍ଡ, ଚ୍ୟବନପ୍ରାସ । ଔଷଧ ଯାହା ହେଉନା କାହିଁକି ଦାସଙ୍କୁ ଏଇ ନାଁ ଗୁଡ଼ିକ ଭାରି ଭଲ ଲାଗେ । ନାଁ ଯାହାର ଏତେ ସୁନ୍ଦର, ବ୍ୟାକରଣସିଦ୍ଧ, ତାର ଶକ୍ତି ମଧ୍ୟ ସେହିଭଳି ହୋଇଥିବ ବୋଲି ସେ ଧରି ନେଇଥିଲେ ।

ଔଷଧଖିଆ ଆରମ୍ଭ କରି ଦାସେ ପ୍ରଥମେ କବିରାଜଙ୍କ ପାଖକୁ ଖିଆ ଆରମ୍ଭ ହେଲାବୋଲି ଚିଠି ଲେଖି ଜଣାଇ ଦେବାମାତ୍ରେ, କବିରାଜେ ଉତ୍ତରରେ ଲେଖିଥିଲେ, ଅନୁପାନ ଓ ପଥ୍ୟ ଠିକ ରଖିଥିବେ, ନଇଲେ ଔଷଧଗୁଡ଼ାକ ଗୁଣ କରିବନି ।

ଦୁଧ, ଦହି, ଘିଅ ଓ ଫଳ ଖାଇ ଦାସେ ମାସଟାଯାକ କୁଇଦିନରେ ଥରେ କରି ଷ୍ଟେସନପାଖ ଓଜନ ଯନ୍ତ୍ରଟାରେ ଅଣେ ଅଣେ ଚଢିଲେଇ ଓଜନ ହୋଇ ଆସନ୍ତି । ମାସକ ପରେ ଦେଖନ୍ତି ତ ଯାହା ଥିଲା ସେଯା···।

ସବୁ ଗୁଣି ଗୁଣି ଦାସେ ଶେଷରେ ସ୍ଥିର କଲେ ଯେ କବିରାଜ ଔଷଧ ଭିତରେ ଦ୍ରାକ୍ଷାରିଷ୍ଟହିଁ ସର୍ବଶ୍ରେଷ୍ଠ ଔଷଧ । କାଶ ସର୍ଦ୍ଦି ଭଲ ହୁଏ, ଦେହକୁ ଗରମ ରଖେ, କାମ କରିବାକୁ ସ୍ପୃହା ଦିଏ, ଆଖିକୁ ନିଦ ଦିଏ, ଖାଦ୍ୟକୁ ଜୀର୍ଣ୍ଣ କରାଏ । ତେଣୁ ସର୍ବ-ରୋଗ ଉପଶମକାରୀ ଏଇ ଔଷଧଟି ବୋଲି ମନେ ମନେ ସେ ଧରି ନେଇଥିଲେ ।

× × × ×

ତଥାକଥିତ କବି ସେ ଦିନ ସବୁକଥା ପଚାରି ସାରିବା ପରେ, ଅଚ୍ଛା ମୂର୍ଚ୍ଛନା ପାଇଁ ଔଷଧପତ୍ର କିଛି ବ୍ୟବସ୍ଥା କରିଚ କି ବୋଲି ପଚାରିଥିଲେ । ଦାସେ ସଙ୍ଗେ ସଙ୍ଗେ ଉତ୍ତର ଦେଇ-ଥିଲେ—ଔଷଧ ? ଔଷଧରେ ଘର ଭର୍ତ୍ତି । କବିରାଜ ଶାସ୍ତ୍ରରେ

ଯେତେ ଔଷଧ; ସବୁଗୁଡ଼ାକର ନାଁ ଗାଇଯାଇ ଶେଷରେ ପହଞ୍ଚିଥିଲେ, ସେଇ ଦ୍ରାକ୍ଷାରିଷ୍ଟ ପାଖରେ । ଟେବୁଲ ଉପରେ ସେଇଥିରୁ ତିନି ଚୁହାଟା ଶିଶି । ତାକୁ ଦେଖେଇ କହିଲେ, ଏଇ ଦେଖନ୍ତୁ, ଇଥିରୁ ଦିନକୁ ପାନେ ଦିପାନ ପିଇଲେ ହ'ନ୍ତାନି ? କହି କହି ବୁଝେଇ ବୁଝେଇ ମୋର ପାଥ' କ ସରିଗଲାଣି । ଅଭଦ୍ର ହେଲେ, ପାନେ, ନଇଲେ ଦିପାନ···ମୋର ମନେ ନ ପଡ଼ିଲେ, ସିଏ ସେତିକରେ ରହିଲା·· ।

କକାଜଣଙ୍କ କ'ଣ କହିବାକୁ ଚାହୁଁଥିଲେ ଦାସେ କନ୍ତୁ ତାଙ୍କୁ କୁହାଇ ଦେଲେନି । କହି ଚାଲିଲେ, ଏଇ ତ ସେଦିନ ଧନୁଶର ଧରି ଯେଉଁ ଶବରଗୁଡ଼ାକ ସ୍ୱମଚିରି, ଦଣ୍ଡକାରଣ୍ୟରୁ ଆସନ୍ତି ନି, ସେମାନେ କ'ଣ ଗୁଣ୍ଡ ଔଷଧ ଦଉଥିଲେ, ସାହିଯାକ ମାଇପେ ରଖିଲେ, ଅମର ଯ୍ୟାଙ୍କ ଯେତେ କହିଲି, ଯଅ ଠିକଏ, କ'ଣ ଗଲେ ? ଏକାଜିଦ୍, ଯଦି ଖାଇବ ଏଲେପ୍ୟାଥିକ, ନଇଲେ ନାହିଁ । କନ୍ତୁ ତୁମର ସେଇ ମୂର୍ଚ୍ଛ'ନା, ପୁଣି ଅଉଦିନେ କୁଉଠି ଗୋଟେ ଗୁପ୍ତଗଙ୍ଗା ବାହାରିଥିଲା, ସେଇଠୁ ପାଣି ପିଇଲେ, କୁଅଡ଼େ ସବୁରୋଗ ଚାଲିଯାଏ ବୋଲି ସାଇପଡ଼ିଶାଙ୍କଠୁ ଶୁଣି, ଲଗେଇ ବସିଲେ, ନା ଯିବାକୁହିଁ ହବ । ଅମୁକର ବୋଉ, ଅମୁକର ଖୁଡ଼ୀ, କଳାହାଣ୍ଡି, କୋରାପୁଟ ଅଉ ଏତେ ଖର୍ଚ୍ଚ କରି, ଏଇ ପାଣି ଠିକକ ପାଇଁ ଅସିଚନ୍ତି, ଅଉ ଆମେ ଏଇ ପାଖରେ ଥାଇ ଯିବାନି ?···ମୁଁ ସିନା ଗଲିନି, କୋଉବାଟେ କମିତ ଖସି ପଳେଇଗଲେ ନା, ରହିପାରିଲେନି । ଏଇ ଯେଉଁ ଶିଶିଟାରେ ପାଣି ଭର୍ତ୍ତିହେଇ ରହିଚି, ସେତିକ ସେଇ ଗୁପ୍ତଗଙ୍ଗା ପାଣି । ମାଅ ପାଖକୁ ପଠେଇବା ପାଇଁ ରଖିଛନ୍ତି । ଆପଣ ତ ଅସିଚନ୍ତି, ନେଇଯିବେ । ନଇଲେ ହଠାତ୍ କେବେ ମନେ ପଡ଼ିବ, କହିବେ ହଇ ହେ, କାହା ହାତରେ ପଠେଇ ନ ପାରୁଚ ଯଦି, ପାର୍ଶଲ କରି ଦଉନ କାହିଁକି ବୋଲି । ମୁହଁକୁ ଲଣ୍ଡୁରି ଅଥାର ଭଳି ଏଉଟ୍କଟେ କରି ବସିବେ ।

କେବଳ ହୁଏ ତ ଅଜ କ'ଣ କହୁଥାଅନ୍ତେ, ଦାସଙ୍କ କଥାରେ ମନଭାବ ସବୁ ଭୁଲିଗଲେ । ଦାସଙ୍କ ଅଗରେ ମୂର୍ଚ୍ଛନା, ମୂର୍ତ୍ତିଟିଏ ଭଳି ଚୁପ୍ ଚାପ, ତୁନିତାନ ରହିଥିବା ଦେଖି ସେ ବଡ଼ ବିସ୍ମିତ ହୋଇ ପଡ଼ିଥିଲେ । ଏଇ କେତେବର୍ଷ ତଳେ ଯିଏ ଗ୍ରାମସେବିକା ହେବାପାଇଁ ବାହାରି ପଡ଼ିଥିଲା, ଏକା ଏକା ଶହେ ଦୁଇଶ ମାଇଲିବାଟ ବସରେ ଯାତାୟାତ କରୁଥିଲା, ଭୂଦାନ ସଭାରେ ଭାଷଣ ଦେଉଥିଲା, ଗୀତ ବି ବୋଲୁଥିଲା, ଇଏ କଣ ସେଇ ମୂର୍ଚ୍ଛନା !

ହାତରେ କପେ ଚା ଧରି ଆସୁ ଆସୁ ମୂର୍ଚ୍ଛନା ଚାରିଆଡ଼କୁ ଚାହୁଁଥିଲେ – କୁଆଡ଼ଠି ଟିକିଏ ଅଠିକଣା ହେଇଗଲେ, ଇଏ ଏଉଁକି ପାଟି କରି ଉଠିବେ ।

ଇମିତ ଇମିତରେ ଚାହୁଁ ଚାହୁଁ ତିନୋଟି ବର୍ଷ ବିତିଯାଇଚ । ତଟିନୀଦେବୀଙ୍କ କଳାକେନ୍ଦ୍ରର ତିନୋଟି ବାର୍ଷିକୋତ୍ସବ ହୋଇଗଲାଣି । କାର୍ଯ୍ୟକାରୀ କମିଟିର ସଭ୍ୟଗୁଡ଼ାକ ଇମିତ ବଦଳିଯିବେ ବୋଲି ତାଙ୍କର ଧାରଣା ନ ଥିଲା । ଖୋସାମତ ପାଇବା, ତଟିନୀଦେବୀଙ୍କ ଛଡ଼ା କଳାକେନ୍ଦ୍ର ଚାଲି ନ ପାରେ ବୋଲି ସାତ ଆଠ ତୁଣ୍ଡରୁ ଶୁଣିବା ଆଶାରେ ଗତବର୍ଷ ବାର୍ଷିକୋତ୍ସବ ପୂର୍ବରୁ ଜେନରାଲବଡ଼ି ମିଟିଂରେ ତଟିନୀଦେବୀ ନିଜ ଇସ୍ତଫାପତ୍ରଟି ଆଗତ କରି ବସିଲେ । ସ୍ୱାମୀ ଭିତରେ କୁଦ୍ରବାବୁ ସଭ୍ୟଗୁଡ଼ାଙ୍କୁ ଇମିତ ମତେଇ ପାରିଛନ୍ତି ବୋଲି ତଟିନୀଦେବୀଙ୍କ ଧାରଣା ନ ଥିଲା । ବୈଠକରେ ବସି ମଝି ମଝିରେ ମୁହଁକୁ ଟିକିଏ

ଶୁଖେଇ ଦେହରେ ଅସୁସ୍ଥତା ଦର୍ଶାଇ ଇସ୍ତଫାପତ୍ର ଦେବାମୂଳରେ ଥିବା ଯୁକ୍ତିକୁ ଗୋଟି ଗୋଟି କରି ବାଢ଼ୁଥିଲେ ସେ ।

'ତାଙ୍କର ବକ୍ତବ୍ୟ ସରିବାମାତ୍ରେ ରୁଦ୍ରବାବୁ ହଠାତ୍ କହି ଉଠିଲେ, ନା, ପ୍ରକୃତରେ ତଟିନୀଦେବୀ ଅସୁସ୍ଥ । ତାଙ୍କ ଉପରେ ଆମେମାନେ ଚାପଦେବା ଉଚିତ ନୁହେଁ । ଧର, ତଟିନୀଦେବୀ ଆଜି ମରିଯିବେ, ତାହାହେଲେ କେନ୍ଦ୍ରଟାକୁ ତ ଭାଙ୍ଗି ଦେବା ନାହିଁ, ଆମେହିଁ ଚଳେଇବା । ଏଇଟା ତ କାହାରି ବାପର ସମ୍ପତ୍ତି ନୁହେଁ—ଏକ ସାଧାରଣ ଅନୁଷ୍ଠାନ ।

ବାସେ କୌଣସି ରାଜନୀତିରେ ପଶନ୍ତି ନାହିଁ । ଗଣତାନ୍ତ୍ରିକ ଅନୁଷ୍ଠାନରେ ଦାୟିତ୍ୱର ବଣ୍ଟନ ଓ ବ୍ୟକ୍ତିର ପରିବର୍ତ୍ତନ ଆବଶ୍ୟକ—ସେଇ ଦୃଷ୍ଟିରୁ ସେ କାହାରି ଉପରକୁ ଦୃଷ୍ଟି ନ ଦେଇ, ମୁହଁକୁ ତଳକୁ କରି ସଙ୍ଗେ ସଙ୍ଗେ ପ୍ରସ୍ତାବ ଦେଲେ, ତାହାହେଲେ ରୁଦ୍ରବାବୁ ସଂପାଦକ ହୁଅନ୍ତୁ । ତାଙ୍କର ଯଥେଷ୍ଟ ଉତ୍ସାହ ଓ ସମୟ ମଧ୍ୟ ଅଛି । ଏ କାମକୁ ସେ ଜଣେ ଉପଯୁକ୍ତ ବ୍ୟକ୍ତି । ଖାଲି ସଂପାଦକ ରହିଲେ ଚଳିବନି, କୋଷାଧ୍ୟକ୍ଷ ମଧ୍ୟ ହୁଅନ୍ତୁ । ସୋରିଷ ତେଲର ହୋଲସେଲର ସେ, ବହୁ ବ୍ୟବସାୟୀ, କଂଟ୍ରାକ୍ଟରଙ୍କ ସହିତ ପରିଚିତ । ଚାନ୍ଦାପତ୍ର ଅସୁଲ ମଧ୍ୟ କରି ପାରିବେ । ତଟିନୀଦେବୀଙ୍କୁ ବିଶ୍ରାମ ଦିଆଯାଉ । କେନ୍ଦ୍ର ଲାଗି ତାଙ୍କର ତ୍ୟାଗ, ଦାନ ଅତିରିକ୍ତ ହୋଇ ପଡ଼ିଲଣି, ପ୍ରଶଂସାର ବୋଝ ବୋହି ପାରିବା ହୁଏ ତ ଆଉ ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ପ୍ରଶଂସା ଅଧିକ ହୋଇ ପଡ଼ିଲେ, ହୁଏ ତ ବୋହି ନ ପାରି, ସଂବୃତକୁ ଅଜାଡ଼ି ଦେବେ । ଯେତେକ ପାଇଛନ୍ତି, ସେତିକ ଯିବ । ତନ୍ତ୍ର ପ୍ରଶଂସାତକକୁ ଗୋଟେଇ ଗୋଟେଇ ନିନ୍ଦା ବି ଗୁଡ଼ାଏ ଗୋଟେଇ ପୋଟେଇ ଧରିବେ । ସେଇକଥା ବୁଝି ପାରିଛନ୍ତି ବୋଲି ହୁଏ ତ ତଟିନୀଦେବୀ ଆଜି ଇସ୍ତଫାପତ୍ର ନିଜ ହାତରେ ଲେଖି ଆଣିଛନ୍ତି । (ଆଗେ ସେ ମୌଖିକରେ ଇସ୍ତଫା ଦେବି ବୋଲି କହୁଥିଲେ । )

ଏଭଳି ପରୋକ୍ଷ ସମାଲୋଚନାରେ ଉର୍ମିଳାଦେବୀ ଅଙ୍ଗ ବିବ୍ରତ ହୋଇ ପଡ଼ିଲା ଭଳି ମନେ ହେଲା । ସେ ସଙ୍ଗେ ସଙ୍ଗେ ସଭାଗୃହ ଛାଡ଼ି ଚାଲିଗଲେ । କୋରମ ଲାଗି ଯେତେ ସଭ୍ୟଙ୍କ ଉପସ୍ଥିତି ଆବଶ୍ୟକ, ତାଠୁ ବହୁ ଅଧିକ ସଭ୍ୟ ଉପସ୍ଥିତ ଥିବା ହେତୁ ଗଣତାନ୍ତ୍ରିକ ପଦ୍ଧତିରେ ବୈଠକ ସିମିତି ଚାଲିବା କଥା ସେମିତି ଚାଲିଥିଲା ।

ରୁଦ୍ରବାବୁ ସେକ୍ରେଟେରୀ ଓ ଟ୍ରେଜରର ଭାବରେ ନିର୍ବାଚିତ ହେଲେ । ପ୍ରତି ମାସରେ କାର୍ଯ୍ୟକାରୀ କମିଟି ବସି କେନ୍ଦ୍ରର ପରିଚାଳନା ସଂପର୍କରେ ଆଲୋଚନା କରାଯିବ ବୋଲି ମଧ୍ୟ ସ୍ଥିର ହେଲା । ଉର୍ମିଳାଦେବୀଙ୍କ ବିରୋଧୀ ଲୋକେ ବଡ଼ ଖୁସି ହେଲେ । କେଏ କେଏ ସେଦିନ ଭୋଜିଭାତ କରି ଆନନ୍ଦ ମହୋତ୍ସବ କରିଥିବା କଥା ମଧ୍ୟ ଶୁଣାଗଲା ।

ଉର୍ମିଳାଦେବୀ ତା ଆରଦିନଠୁ ଘରେ ତାଲାପକା ପକେଇ ଦୋକାନ ଭାର ଦୋକାନଦାରମାନଙ୍କୁ ଦେଇ ଦାର୍ଜିଲିଂକୁ ବିଶ୍ରାମ ଗ୍ରହଣ ଲାଗି ଚାଲିଗଲେ ।

ସହରରେ ଉର୍ମିଳାଦେବୀଙ୍କୁ ଯେଉଁମାନେ ଭଲଭାବରେ ଜାଣନ୍ତି ସେମାନେ କହିଲେ, ଉର୍ମିଳାଦେବୀ ? ଦେଖିବ ବର୍ଷେ ଦିବର୍ଷ ଭିତରେ ପୁଣି ସେଇ ଅନୁଷ୍ଠାନକୁ କରଗତ କରିନେବେ । ତା ଭଳି ଚାଲାକ, ଚତୁର ଲୋକ ଖୁବ୍ କମ୍ । ସେ ତ ମାଇପି ଲୋକ ନୁହେଁ, ଗୋଟାଏ ମରଦ । ଶକତ୍ ମରଦ । ଯାହା କରିବା କଥା ତ କରିଗଲା, ଖାଲି ମର୍ଯ୍ୟାଦାଟା ! ସେତକ କମିତ ଟିକିଏ ଖସୁ ଖସୁ ଖସିଗଲା ବୋଲି, ସେ ଯେ ହଟିଯିବ, ତା ଭାବିବା ଠିକ୍ ନୁହେଁ । କ'ଣ ହଉଚି ଦେଖ...।

ଦାସେ ବି ସେଇକଥା ଭାବୁଥିଲେ ।

କିନ୍ତୁ ରୁଦ୍ର କହେ, ଦେଖ ମୁଁ କ'ଣ କରୁଛି... ସବୁ ହିସାବ କିତାବ ବାହାର କରି ତାକୁ ପଦାରେ ପକେଇଦେବି । ହଜାର ହଜାର ଟଙ୍କା ଖାଉଚି । ଭିତରେ ପଶ କରୁନାହିଁ । ଏବେ ଯୋ

ଅଚ୍ଛାକୃଷ୍ଣାଣ୍ଟଷ୍ଟା ଅଛନ୍ତି, ତାଙ୍କୁ ନ ଡାକିଲେ ଏ କେନ୍ଦ୍ରର କୌଣସି ଉନ୍ନତି ହୋଇ ପାରିବ ନାହିଁ । ସିଏ ସବୁ ନାଟର ଗୋବର୍ଦ୍ଧନ । ତାଙ୍କରି ହାତ କରି ତଟିନୀଦେବୀ ସବୁ ଲୁଚୁଛପା କାରବାର ଚଳାଇଥିଲି । ସମସ୍ତଙ୍କୁ ସାବାଡ଼ କରିଦେବି ।

ରୁଦ୍ରବାବୁଙ୍କ ଯେ ଜନାଗୁଡ଼ାକ କାନରେ ଶୁଣିବାକୁ ଭାରି ଭଲ ଲାଗେ । କୋଠା ଉପରେ କୋଠା, ସର୍ବାଧୁନିକ ଘୂର୍ଣ୍ଣାୟମାନ ରଙ୍ଗମଞ୍ଚ, ଚଳଚ୍ଚିତ୍ର ନିର୍ମାଣ, ଡାନ୍‌ସଟ୍ରୁପ୍ ଧରି ସାରା ଭାରତ ପରିକ୍ରମଣ, ଓଡ଼ିଶୀ ସଙ୍ଗୀତର ପୁନରୁଦ୍ଧାର, ପଲ୍ଲୀନୃତ୍ୟଗୀତର ଗବେଷଣା, ଶାନ୍ତିନିକେତନ ଭଳି ଏକ ରେସିଡେନ୍‌ସିଆଲ ବିଶ୍ୱବିଦ୍ୟାଳୟ ସ୍ଥାପନ ଇତ୍ୟାଦି ଥିଲା ତାଙ୍କ ପଞ୍ଚବାର୍ଷିକ ଯୋଜନା ଅନ୍ତର୍ଭୁକ୍ତ ।

ଟଙ୍କା କୁଆଡ଼ୁ ଆସିବ ବୋଲି ଯଦି କେହି ପଚାରେ ରୁଦ୍ରବାବୁ କହନ୍ତି, ମୁଁ ତଟିନୀଦେବୀ ନୁହେଁ, ରୁଦ୍ରଚରଣ ସାମଲ । ଟଙ୍କା ? ଟଙ୍କା ଅଭାବରେ କ'ଣ କିଛି ବନ୍ଦ ରହିପାରେ ? ତାପରେ ନିଜ ବ୍ୟବସାୟର ଯୋଜନା ସବୁ କହି ଯାଆନ୍ତି ସେ । ସୋରିଷ ତେଲରୁ ଆରମ୍ଭ ହୋଇ ଖାଣ୍ଡିଘିଅରେ ଯାଇ ପହଞ୍ଚନ୍ତି । ବ୍ୟବସାୟର ବ ଅକ୍ଷର ସୁଦ୍ଧା ଜାଣି ନଥିବା ଦାସେ ତାଙ୍କ ଯୋଜନାକୁ ବେଳେ ବେଳେ ତାରିଫ କରନ୍ତି ।

ରୁଦ୍ରବାବୁ ଯେ ଇମିତି ଖାଲି କହନ୍ତି କିଛି କରନ୍ତି ନି ତା ନୁହେଁ, କିଛି କିଛି କାମ କରନ୍ତି । ମ ସକୁ ଯୋଡ଼ା ଯୋଡ଼ା ମନ୍ତ୍ରୀଙ୍କି ଡାକି ନାଚଗୀତ ଦେଖାନ୍ତି, ସାମ୍ବାଦିକମାନଙ୍କୁ ଡାକି ଗୁହା-ବାଙ୍ଗୁସିଗାରେଟ ଖୁଆନ୍ତି ।·ସେମାନଙ୍କୁ ଗଲାବେଳେ ଗୋଟିଏ ଗୋଟିଏ ବିବୃତ୍ତିର କପି ଦେଇ, ହାତଯୋଡ଼ି ମୁରୁକି ମୁରୁକି ହସି କହନ୍ତି, କ'ଣ କାଲିକି କାଗଜରେ ଦେଖି ପାରିବି ତ ?

ସାମ୍ବାଦିକମାନେ ସମସ୍ୱରରେ କହନ୍ତି, ଜରୁର ।

ରୁଦ୍ରବାବୁ ତା ଆର ଦିନ ନିଜର ପ୍ରଶସ୍ତିକୁ ଖବର କାଗଜରେ ପଢ଼ି ଅପ୍ୟାୟିତ ହୋଇ ଉଠନ୍ତି । ଦରିଦ୍ର

ସାମ୍ବାଦିକ ଗୋଷ୍ଠୀଙ୍କ ମଧ୍ୟରୁ କେତେଜଣ ଦରକାର ପଡ଼ିଲେ ଧାରକଧାର ପାଇଁ ରୁଦ୍ରବାବୁଙ୍କର ଦ୍ୱାରସ୍ଥ ମଧ୍ୟ ହୋଇ ଥାଆନ୍ତି । ରୁଦ୍ରବାବୁ ସେ ସବୁ କଥାରେ କେବେ ନାସ୍ତିବାଣୀ ଶୁଣାନ୍ତି ନାହିଁ ।

ତଟିନୀଦେବୀଙ୍କ ଘରର ତାଲା ଖୋଲେ ନାହିଁ । ସେ ଦାର୍ଜିଲିଂରୁ ଡ଼େରାଡୁନ୍, ଡେରାଡୁନ୍‌ରୁ କାଶ୍ମୀର ବୁଲୁଥାଆନ୍ତି ।

ହଠାତ୍ ଦିନେ ରୁଦ୍ରବାବୁଙ୍କୁ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ଡାକରା ଆସେ । ରୁଦ୍ରବାବୁ ଦାସଙ୍କ ପାଖକୁ ଦୌଡ଼ନ୍ତି, କ'ଣ କରାଯିବ ? ଦୁହେଁ ମିଶି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଆନ୍ତି । ମୁଖ୍ୟମନ୍ତ୍ରୀ ତଟିନୀ ଦେବୀଙ୍କ ପାଖରୁ ଆସିଥିବା ପାଞ୍ଚହଜାର ଟଙ୍କାର ଗୋଟିଏ ଚେକ୍ ଦେଖେଇ ରୁଦ୍ରବାବୁଙ୍କୁ କହନ୍ତି, ଦେଖନ୍ତୁ ରୁଦ୍ରବାବୁ, ଏଇଟି ତଟିନୀଦେବୀ ମାନ୍ଦ୍ରାଜରୁ ମୋ ଜରିଆରେ ତୁମ କେନ୍ଦ୍ରପାଇଁ ପଠାଇଚନ୍ତି । ତୁମେ ତଟିନୀଦେବୀଙ୍କ ସଂବନ୍ଧରେ ମତେ ଯେଉଁ ଧାରଣା ଦେଇଥିଲ ଭୁଲ । ସେ ଗଲା ଛଅ ମାସ ହେଲା, କେନ୍ଦ୍ରପାଇଁ ଚାନ୍ଦା ସଂଗ୍ରହ ଲାଗି ସାରା ଭାରତ ବୁଲୁଛନ୍ତି ବୋଲି ମୋ ପାଖକୁ ଲେଖିଚନ୍ତି । ବାସ୍ତବରେ ସେ ଜଣେ ଉତ୍ସାହୀ ମହିଳା' । ବର୍ତ୍ତମାନ ଚାହିଁଲେ ମଧ୍ୟ ତୁମେ ଏ ଚେକ୍ ଖଣ୍ଡିକ ନେଇଯାଇପାର କିନ୍ତୁ ମୁଁ ଭାବୁଚି, ଗୋଟିଏ ଉତ୍ସବ ଅନୁଷ୍ଠାନ କର, ସେଇଠି ଏ ଚେକ୍‌ଟି ତୁମକୁ ହସ୍ତାନ୍ତର କରିଦେବି । କ'ଣ ଦୀନବନ୍ଧୁ, ଏଇଟି ଭଲ ପ୍ରସ୍ତାବ ନୁହଁ ?

ଦାସେ କିଛି ନ ବୁଝି ଖାଲି ହଁ ମାରନ୍ତି । କାରଣ ନାହିଁ କହିଲେ, ସେଥିଲାଗି ଗୋଟାଏ କିଛି କୈଫିୟତ ମଧ୍ୟ ଦେବାକୁ ପଡ଼ିପାରେ । ମନ୍ତ୍ରୀମୁଣ୍ଡ, ସେ ମୁଣ୍ଡରୁ କେତେବେଳେ କୋଉ ପ୍ରଶ୍ନ ବାହାରିବ, ତାର କିଛି ଠିକଣା ନାହିଁ । ମନ୍ତ୍ରୀମାନଙ୍କ ପାଖରେ ଇମିତି ହଁ କହିବାଟା ତାଙ୍କଭଳି ବହୁ ଲୋକଙ୍କର ଅଭ୍ୟାସ ।

ଦାସଙ୍କ ମୁହଁରୁ ହଁ ଶୁଣିବା ମାତ୍ରେ ମନ୍ତ୍ରୀମହୋଦୟ ସଙ୍ଗେ ସଙ୍ଗେ କହି ଉଠିଲେ, କେବଳ ମୋର ଏ ମତ ନୁହେଁ, ଦୀନବନ୍ଧୁଙ୍କର ବି । ତୁମେ ଏଠୁ ଆଜ ଯାଇ ଗୋଟିଏ ସଭାର ଯୋଗାଡ଼ କର, କେବେ କରୁଛ ମତେ ଜଣାଅ, ମୁଁ ତଦନୁଯାୟୀ କାର୍ଯ୍ୟ କରିବି । ଦରକାର ହେଲେ ତଟିନୀଦେବୀଙ୍କୁ ସେ ସଭାକୁ ଡକାଇ ଆଣିବା । ସେ ସେହି ଅନୁଷ୍ଠାନରେ ଉପସ୍ଥିତ ରହିବା ବାଞ୍ଛନୀୟ । କ'ଣ କିଛି ମତଭେଦ ହୋଇଥିବ, ସେ ସବୁକୁ ଭୁଲିଯିବା ଉଚିତ । କିଓ ! ତଟିନୀଦେବୀଙ୍କୁ ଛାଡ଼ି ତୁମେ ସେ କେନ୍ଦ୍ରକୁ ଚଳେଇ ପାରିବ ? ତା ଛଡ଼ା ମୁଁ ଗୋଟିଏ ଉତ୍ତମ ପ୍ରସ୍ତାବ କରୁଛି, ସେ କଥା ତୁମେ ଅଳ୍ପ ଦି ଦିନ ବାଦେ ଆସ, କହିବି । ମୋର ତ ଆଶା ହେଉଛି, ତୁମେ ସେଥିରେ ଅମତ ହେବ ନାହିଁ ।

...ଦି ଦିନ ବାଦେ ରୁଦ୍ର ମନ୍ତ୍ରୀଙ୍କ ପାଖକୁ ଯାଇଥିଲା । ଉତ୍ତମ ପ୍ରସ୍ତାବଟି କ'ଣ କରେ ରୁଦ୍ର ବୋଲି ଆମେ ପଚାରିଥିଲୁ । ବିଚରା ରୁଦ୍ର, ସେଠୁ କି କର୍ଣ୍ଣମନ୍ତ୍ର ପାଇ ଆସିଥିଲା କେଜାଣି, ତା ମୁହଁଟି ବଡ଼ ଖୁସିଲା ଖୁସିଲା ଦେଖାଯାଉଥିଲା ।

ଅଠଦିନ ବାଦେ କେନ୍ଦ୍ର ପ୍ରାଙ୍ଗଣରେ ପାଞ୍ଚହଜାର ଟଙ୍କାର ଚେକ୍ ହସ୍ତାନ୍ତର ଉତ୍ସବ ହେଲା । ମନ୍ତ୍ରୀ ଆସିଲେ । ତଟିନୀଦେବୀ ମଧ୍ୟ ଆସି ମନ୍ତ୍ରୀଙ୍କ ପାଖରେ ବସିଥିଲେ । ମନ୍ତ୍ରୀ ତାଙ୍କ ଭାଷଣରେ ତଟିନୀଦେବୀଙ୍କର ବହୁ ପ୍ରଶଂସା କଲେ । ରୁଦ୍ରଚରଣଙ୍କୁ ସେଠି ବୁଲୁଚ କାହିଁକି, ଏଠିକି ଆସ କହି ଆରପାଖ ସିଟରେ ବସେଇଲେ । ବହୁ ହସ ଖୁସିରେ ଗପସପ ହେଲା । ଶେଷରେ ତଟିନୀଦେବୀ ଓ ରୁଦ୍ରଚରଣ ଏକା ରିକ୍ସାରେ ବସି ତଟିନୀ-ଦେବୀଙ୍କ ଘରକୁ ଗଲେ ।

ଦୁଇଦିନ ବାଦେ ତଟିନୀଦେବୀଙ୍କ ଘରକୁ ଆଜ ସନ୍ଧ୍ୟାବେଳେ ଠିକଏ ଯିବେ, ରୁଦ୍ରବାବୁ କହି ପଠେଇଚନ୍ତି ବୋଲି କେନ୍ଦ୍ରର ଜଣେ ପିଅନ ଦାସଙ୍କୁ ତାଙ୍କ ଅଫିସରେ କହି ଦେଇଗଲା...

ଦାସେ ସେଦିନ ଅଫିସରୁ ନିଜ ଘରକୁ ନ ଆସି ତଟିନୀ-ଦେବୀଙ୍କ ଘରକୁ ଗଲେ । ଦୂରରୁ ଦେଖିଲେ, ଘର ଉପରେ ଗୃହ ଓ ଝଣ୍ଡା ହେଉଛି, ଘର ଆଗରେ ମନ୍ତ୍ରୀଙ୍କ ଗାଡ଼ି ବ୍ୟତୀତ ଅନ୍ୟ ଭିନ ଗୃହସ୍ଥ ମଟରଗାଡ଼ି । ଘର ଭିତରକୁ ପଶି ସେ ଅବାକ୍ ହୋଇ ପଡ଼ିଲେ । ପ୍ରଥମେ ମନ୍ତ୍ରୀଙ୍କ ସହିତ ତାଙ୍କର ଦେଖା-ହେଲା । ମନ୍ତ୍ରୀମହାଶୟ କହିଲେ, ବୁଝିଲ ଦୀନବନ୍ଧୁ, ସେଦିନ ଉତ୍ତମ ପ୍ରସ୍ତାବ କଥା ଯାହା ରୁଦ୍ରକୁ କହୁଥିଲି, ସେଇଟି ଏଇ । ଭଲ ହେଲନି ?

…ଦାସେ ହଠାତ୍ କିଛି ବୁଝି ପାରିଲେନି । କିନ୍ତୁ ପରେ ପରେ ବୁଝି ପାରିଲେ, ଯେତେବେଳେ ସେ ପଛକୁ ମୁହଁ ବୁଲେଇ ଦେଖିଲେ, ରୁଦ୍ର ଆଉ ତଟିନୀଦେବୀ ବରକନ୍ୟା ବେଶରେ ସଜ୍ଜିତ ହୋଇ ବସିଚନ୍ତି । ଏ ପଟେ ତଟିନୀଦେବୀ—ବୟସ ଅଠତିରିଶ—ଆଉ ସେପଟେ ରୁଦ୍ରଚରଣ ସାମଲ—ବୟସ ତେତିଶ ।

ତଟିନୀଦେବୀଙ୍କ ଇସ୍ତଫା ଗୃହୀତହେବା ପର ଦିନ, ଦେଖ ତଟିନୀଦେବୀ ବର୍ଷକ ପରେ କେନ୍ଦ୍ରକୁ କରଗତ କରି ନେବେ ବୋଲି ରୁଦ୍ରକୁ ଯେଉଁ ବ୍ୟବସାୟୀ ଜଣଙ୍କ କହୁଥିଲା, ସିଏ ଦାସଙ୍କ ଦେହରେ ଅଙ୍ଗୁଠି ମାରି କହିଲେ, କ'ଣ କହୁଥିଲି ବାବୁ, ଦେଖୁଚ ତ ? ସେତେବେଳେ ଅଧେ ଥିଲା, ଏବେ ପୂରାପୂର ।

ମିଠେଇ ଖିଆ ହେଲା, ନାଚ ଦେଖାହେଲା, ଗୀତ ଶୁଣାଗଲା……।

ଦାସେ ଫେରିଗଲାବେଳେ ବରକନ୍ୟାଙ୍କ ସହିତ କରମର୍ଦ୍ଦନ କରିଗଲେ । ରୁଦ୍ରବାବୁଙ୍କୁ ଚିହ୍ନିଏ ଗୃହି ପାରିଲେ କିନ୍ତୁ ତଟିନୀଦେବୀଙ୍କ ଆଡ଼କୁ ସେ ଆଦୌ ଗୃହିଁ ପାରିଲେ ନାହିଁ ।

ବାଟ ଯାକ ମନ ଭିତରେ ଗୁଡ଼ାଏ ହସ ହସି ସେ ଘରକୁ ଫେରନ୍ତି···ରନାଦେବୀ ମନ ଭିତରେ ଗୁଡ଼ାଏ କାନ୍ଦକୁ ଚାପିଧରି ଚୁହିଁ ରହିଥାଆନ୍ତି । ଦେହରେ ଜରର ତାତକୁ ଦେଖିବାକୁ ସେ କେବେ କାହାକୁ କହନ୍ତି ନାହିଁ । ଏ ତାତ ଦେହର ଚମଡ଼ାରେ ଖାଲି ନ ଥାଏ, ମଜ୍ଜା ଭିତରେ ଥାଏ ।

ଦୁଆର ଫିଟେଇ ଘର ଭିତରକୁ ପଶି ଆସନ୍ତି ଦାସେ । ପଶୁ ପଶୁ କହି ଚାଲନ୍ତି, ଆହେ ଶୁଣୁଚ, ତୁମ ରୁଦ୍ରବାବୁଙ୍କ ସହିତ ଆଜି ଅମର ତଟିନୀଦେବୀଙ୍କର ହଠାତ୍ ବିବାହ ହୋଇଗଲା । ରୁଦ୍ରବାବୁଙ୍କ ସହିତ ତଟିନୀଦେବୀ ମୁହୂର୍ତ୍ତିକରେ କେନ୍ଦ୍ରଟାକୁ ନିଜର କରି ନେଇଗଲେ । ଆମେ ସବୁ ଜଳଛା ଭଳି ଚୁହିଁ ରହିଲୁ, ପାଟିରୁ କାହାର ପଦେ ହେଲେ କଥା ବାହାରିଲାନି ।

ରନାଦେବୀ ମୁହଁରେ ଚାପା ହସକୁ ଫୁଟେଇ କହିଲେ, କାହିଁକି ଆମ ଭାଉଜ ? ସିଏ ‘ଘର କେନ୍ଦ୍ରର ଜଣେ ସଭ୍ୟା, ସିଏ କିଛି କହିଲେ ନାହିଁ ? ମୋ ଆଗରେ, ଇମିତି କଲି ସିମିତି କଲି ବୋଲି କେତେ କହି ହୁଅନ୍ତି···କ'ଣ ସବୁ ମିଛ ?

ଦାସେ କହିଲେ, ନନ୍ଦା କ'ଣ କରିବ, ମୁଁ କ'ଣ କରିବି ? ସେ ତ ଗୋଟାକଯାକ କେନ୍ଦ୍ରକୁ ବାହାହେଇ ଗଲେ । ଆଗରୁ ବରଣମାଳା ସଜାଡ଼ି ଆଣିଥିଲେ । ମନ୍ତ୍ରୀଙ୍କ ଉପସ୍ଥିତିରେ ସବୁ ହେଲା । କାହାର କିଛି କହିବାର ନ ଥିଲା । ସବୁ ଯିମିତି ତା' ମନକୁ ମନ ହେଇଗଲା । ଇଲେକ୍ଟ୍ରି ସୁଇଚ ଟିପି ଯିମିତି ନେହରୁ ମାଇଲଏ ଦୂରରୁ ହୀରାକୁଦ ବନ୍ଧକୁ ଉଦ୍‌ଘାଟନ କରିଥିଲେ, ସିମିତିକା ତଟିନୀଦେବୀ ମାନ୍ଦ୍ରାଜରୁ ସୁଇଚ ଟିପି ରୁଦ୍ର

ବାବୁଙ୍କ ଗଳାକୁ ଚିପି ଧରିଥିଲେ···ବାହା ହବ ତ ହୁଅ-ନଇଲେ··· ।

···ସିପ୍ରା ବଡ଼ଠୁ ଯିଏ ଯୋତା ମାଡ଼ ଖାଇଥିଲେ ସେଇ ରୁଦ୍ରବାବୁଟିଙ୍କ ? ରନାଦେବୀ ପଚାରିଥିଲେ ।

···ହଁ ସେଇ ରୁଦ୍ରବାବୁ, ତୁମେ ଯାହାକଥା ସବୁବେଳେ କୁହ, ସେଇ ରୁଦ୍ରବାବୁ, ରୁଦ୍ରଚରଣ ସାମଲ । ଲଷି, ଲଷି ପରେ ସିପ୍ରା । ଶେଷରେ ତଟିନୀଦେବୀ—ତଟିନୀ ସାମଲ । କଲା! କେଉଁଠା ଅର୍ଦ୍ଧାଙ୍ଗ ଥିଲ, ଏଣିକି ପୂର୍ଣ୍ଣାଙ୍ଗ ହେଇଗଲ । ଏଣିକି ଏକକ ନୃତ୍ୟର ପ୍ରଦର୍ଶନ ହେବନି, ପୂରାପୂରି ଦ୍ୱୈତନୃତ୍ୟ । ତଟିନୀଦେବୀ ପାର୍ବତୀ ହେଲେ, ରୁଦ୍ରବାବୁ ଶିବ ହେବେ; ଇଏ ରାଧା, ସିଏ କୃଷ୍ଣ; ଇଏ ରତି, ସିଏ କାମଦେବ । ତ୍ରିଶୂଳ, ବଂଶୀ ଓ ପୁଷ୍ପଧନୁ ଗୁଡ଼ାକ ବହୁ ଦିନୁ ପଡ଼ି ରହିଛି । ଏଥର କାମରେ ଲଗିବ ।

ବାହାଘରେ କ'ଣ କ'ଣ ହେଇଥିଲା ବୋଲି ପରୋକ୍ଷରେ ରନାଦେବୀ ପଚାରିଥିଲେ । କ'ଣ କ'ଣ ଖାଇ ଆସିଚ ବୋଲି ବହୁ ଦିନୁଁ ପଚାରି ପଚାରି କିଛି ଉତ୍ତର ନ ପାଇବା ହେତୁ ରନାଦେବୀ ଏଣିକି ଇମିତି ପରୋକ୍ଷରେ ଖିଆପିଆ କଥାଟାକୁ ପଚାରି, ସ୍ୱାମୀଙ୍କ ପେଟ ଖାଲି ଅଛି କି ପୂରା ଅଛି ବୁଝି ଥାଆନ୍ତି ।

ଦାସେ କହିଥିଲେ, ତଟିନୀଦେବୀଙ୍କ ଭଲ ଗୋଟା, କାଂପିଠୁ ଛେନା ପୋଡ଼ପିଠା ତ ଆଶା କରିଯାଇ ପାରେନା । ସେଇ ଚୂଡ଼ାଭଜା, ଗଣ୍ଡିଆ ସେଉ ଦାଇ ଦାଇଟା, ଅଳ୍ପ କପେ କପେ ଗୁହା । ମନ୍ତ୍ରୀଙ୍କପାଇଁ କ'ଣ କରିଥିଲେ ଚକଜାଣି ଆମପାଇଁ କିନ୍ତୁ ଏୟା !

ଦାସଙ୍କ ପେଟ ଖାଲି ଅଛି, ଘରେ ଅନ୍ନ ଖାଇବେ ବୋଲି ମନେ ମନେ ଭାବି ଭାବି ଖୁସି ହୋଇ ପଡ଼ିଥିଲେ ରନାଦେବୀ । ବ୍ୟାଧିଗ୍ରସ୍ତ ଦେହର ସମସ୍ତ ଉତ୍ତାପକୁ ଫୋପାଡ଼ି ଦେଇ ସେ ରନ୍ଧା ଆରମ୍ଭ କରି ଥିଲେ । ଦାସେ ହାଁଡ଼ା ହପଟ, ଦେହ ପୋଛିପୋଛି

ସାର ଘର ଭିତରକୁ ପଶି ଅସିଥିଲେ । ଟେବୁଲ୍ ଉପରେ ଗୋଟାଏ ଥାଳରେ କେଇଖଣ୍ଡ ଠୋଲାପୁରି, ଛଟିକା ଅଳ୍ପ ଭଜାକୁ ଦେଖି ବିସ୍ମୟ ପ୍ରକାଶ କରି ପଚାରିଥିଲେ, କିଓ ଏସବୁ କାହା ପାଇଁ ? ମୋ ପାଇଁ ନୁହଁ ତ ?

ରନାଦେବୀ ଥା ଥା ମା ମା ସ୍ୱରରେ କହିଲେ, କହିଲ ପରା କିଛି ଖାଇନ ବୋଲି ? କ'ଣ ଖାଲି ପେଟରେ ଶୋଇବ ? ଶୀତଦିନ । ରାତି ବଡ଼ । ମୋ ସୁନା ଟାପରା, ସେତକ ଖାଇଦିଅ । ଦେଖୁ ଦେଖୁ ପାଞ୍ଚବର୍ଷ ବିତିଗଲା । ଦିନେ ବି ଭଲ କରି ଖଣ୍ଡେ ଖାଇବାର ଦେଖିଲିନି । ମାସେ ଦି ମାସ ହେଲା, ବଡ଼ ଶୁଖିଲା ଦେଖା ଯାଉଚ ତମେ । ଯିଏ ଦେଖୁଚି କହୁଚି, କଲେ ବରଟାକୁ ଗଣ୍ଡେ ଖାଇବାକୁ ବି ଦେଇ ପାରୁନୁ ? ଏତେ ସବୁ । ଖାଲି ହାଡ଼ ଖଣ୍ଡେ ଝୁଲୁଚି ।

ଦାସଙ୍କ ହୃଦୟକୁ ରନାଦେବୀଙ୍କ କଥାଗୁଡ଼ାକ ଭାରି ଛୁଇଁଥିଲା । କହିଲେ ଭୋକ ଲାଗିଲା, ସଂଭାଳି ପାରିଲିନି, ମାନ୍ଦ୍ରାସୀ ହୋଟେଲରୁ ଦିପଟ ଦୋଷା ପକେଇ ଦେଇଚି । ପେଟଟା ଭଲ ଲାଗୁନି । ଏତେ କରି କହିଲଣି, ଭୋକ ହଉଥିଲେ, ଖାଆନ୍ତି ନି ? ରଖି ଥ, ରାତି ଅଧରେ ଭୋକ ହେଲେ, ଖାଇବି । ଯଦି ପାରିବ, କପେ କଫି କରିଦିଅ, ପିଇଦେବି । ଅଜି ଖଣ୍ଡିଏ ପାନ ।

ରନାଦେବୀଙ୍କ ମୁହଁରୁ ବହୁଦିନର ଅନ୍ତର୍ଦାହର ଲେଲିହାନ ଶିଖାଗୁଡ଼ାକ ହଠାତ୍ ବାହାରି ଅସେ । କହି ପକାନ୍ତି, ଅଜି ପାରୁନି । ରାତି ଅଧରେ ଉଠି ପାରିବା ଭଳି ଶକ୍ତି ନାହିଁ । ସେତେବେଳକୁ ଖାହାଁକ କେଜାଣି ଦେହଟା ଭାରି ଶୀତେଇ ଉଠୁଚି । ଠିକ୍ ଜର ହେଲା ଭଳି ଲାଗୁଚି । ପାଟି ଶୁଖିଯାଉଚି । ଆଖିରେ ନିଦ ହେଉନି । ସବୁ ଦିନ ଭାବୁଚି, ସକାଳୁ ଉଠିଲା ବେଳକୁ ପ୍ରାଣବାୟୁ ଉଡ଼ି ଯାଇଥିବ । ଇଲେ ବି ଦେହରେ ଜର ଅଛି । ସେଇଥିପାଇଁ କହୁଚି, ଯାହା ଖାଇବା କଥା ଥିଲେ ଖାଇଦିଅ, ଅଜି ରାତି ଅଧକୁ କିଛି ବାକୀ ରଖିନି । ଦାଦା'

କହୁଥିଲେ, ସ୍ୱତଜରଟା ଦେହ ପକ୍ଷରେ ଅତି ଖରାପ । କାଲି ସେ ଆସିବେ, ତୁମକୁ କଣ କହିବେ ବୋଲି କହୁଥିଲେ ।

ଦାସେ ଏ କଥାରେ ଟିକିଏ ହେଲେ ବି ବିଚଳିତ ହୁଅନ୍ତି ନାହିଁ । କହନ୍ତି, ଜର, ସେଇଟା କିଛି ନୁହଁ । ଦାଦା କଣ କରିବେ ? ଦିଟା ବଟିକାରେ ସେ ସବୁ ଖତମ । ତାପରେ ବର୍ଣ୍ଣନା କରନ୍ତି, ଦି ତିନିଟା ଯୁଗର ଇତିହାସ । ଜରର ଉତ୍ପତ୍ତି, ଜରର ଗତି, ଜରର ଉପଶମ, ପରିସମାପ୍ତି ଆଦି ନାନା କଥା । ମନକୁ ଟାଣ ରଖିଲେ, ଭଲ କରି ମେଞ୍ଚେ ମେଞ୍ଚେ ଖାଇଲେ, ଜର କୁଆଡ଼େ ଗୁଚିଯିବ । ମନ ତାତିଲେ, ଦେହରେ ତାପ ଦେଖାଦିଏ । ମନକୁ ତତାଅନି, ଥଣ୍ଡା ରଖ । ତାଙ୍କ ଜୀବନରେ ଇମିତି ଜର, କେତେ ଆସିଚି, କୁଆଡ଼େ ଗୁଚିଯାଇଚି । ଗଲା ଅଠବର୍ଷ ହେଲା, ସେ ଜର କଣ ଜାଣି ପାରି ନାହାନ୍ତି । ଶେଯ ଉପରେ ଦେହକୁ ସଜାଡ଼ି ଦେଇ ଆଖିକୁ ଧୀରେ ଧୀରେ ବୁଜୁ ବୁଜୁ ଦାସେ ପୁଣି ମନେ ପକେଇ ଦେବାପାଇଁ ରିନାଙ୍କୁ କହନ୍ତି, ମନକୁ ତତାଅନି ରିନା, ଥଣ୍ଡା ରଖ ।

ସେଇ ଯାହା ବର୍ଷକର ସୁଖ, ସୌଭାଗ୍ୟ…। ହନିମୁନଠୁ ଆରମ୍ଭ କରି ଗୋପାଳପୁର ସମୁଦ୍ର ସ୍ନାନ ପର୍ଯ୍ୟନ୍ତ, ସେଇ ବର୍ଷ-କରେହିଁ ରହିଗଲା । ସେଇ ସୀମାରେଖାର ଏପଟକୁ ଦିନେହେଲେ ସୁଖର ପଦସ୍ପର୍ଶ ହେଇନି । ସେତେବେଳେ ଦେହରେ ଯେଉଁ ଉତ୍ତେଜନା ଥିଲା, ସେଇଟା ଜରର ଉତ୍ତେଜନା ନ ଥିଲା, ଥିଲା କାମର ଉତ୍ତେଜନା… ତା'ପରେ ଦେହର ଥଣ୍ଡାଯୁଗଟା ତା ମନକୁ ମନ ଆସି ଯାଇଚି ରିନାଦେବୀଙ୍କ ମନ ଓ ଦେହରେ ।

ଛଦ୍ମ ଗାମ୍ଭୀର୍ଯ୍ୟ ମନ ଭିତରେ ପୂରେଇ ରିନାଦେବୀ ଦେହକୁ ଖଣ୍ଡିଏ ପାନଖିଲି ଭଳି ମୋଡ଼ାମୋଡ଼ି କରି ଭାଙ୍ଗି

ରଖନ୍ତି । ନହାତ ବାଡ଼ଅ ପାନଟେ ବୋଲି ଦାସେ ତାଙ୍କୁ ଫୋପାଡ଼
ଦଅନ୍ତି, ବେଖାତର କରନ୍ତି ।

ଶେଯର ଗୋଟିଏ ପାଖରେ ଏମିତ ରାତ ରାତ ବସୁ ବସୁ ରନାଦେବୀ ଢୋଳେଇ ପଡ଼ନ୍ତି । ସ୍ୱପ୍ନବାଜଲାରେ ସ୍ୱାମୀଙ୍କୁ କୋଡ଼ଭତରକୁ ଟାଣି ନେବାପାଇଁ ହାତ ପ୍ରସାରନ୍ତି ମାତ୍ରେ ତାଙ୍କର ନଦ ଭାଙ୍ଗିଯାଏ, ଦେଖନ୍ତି ଦାସେ ଅଉ ଶେଯ ଉପରେ ନାହାଁନ୍ତି, ନକଟ ଟେବୁଲ୍ ଚୌକୀ ପାଖରେ । ରନାଦେବୀଙ୍କ କାନକୁ ଅଲାରାମ ଘଡ଼ଟାର ଟିକ୍ ଟିକ୍ ଶବ୍ଦ ଶୁଭେ, ଘଣ୍ଟାକଣ୍ଟା ଗୁଡ଼ାକ ଜକ୍ ଜକ୍ ହେଇ ଦଶେ, କନ୍ତୁ ଦାସଙ୍କୁ କଛି ଶୁଭେନା କି ଦେଖାଯାଏ ନା—

ଆଗରେ ଲେଥାଏ ହବ କାଗଜ । ରନାଦେବୀ ଦେଖନ୍ତି, କଲମଟା ଖୁବ୍ ଜୋରରେ କାଗଜ ଦେହରେ ଅକ୍ଷର ଚର୍ଷି ଚାଲିଛି । ଦାସଙ୍କ ପଛ ଅଡ଼ଟାହିଁ ତାଙ୍କୁ ବେଶୀ ଦେଖାଯାଏ । ସେ ଦେହଟା ନ ମିଳୁ ପଛେ, ମୁହଁଟି ହେଲେ ସେ ମୁହୂର୍ତ୍ତରେ ଦେଖିବାକୁ ମିଳୁ ବୋଲି ଯେତେ ଚାହାଁନ୍ତି, ମିଳେ ନାହିଁ । ପୁଣି ତାଙ୍କର ଆଖିପତା ବୁଜି ହେଇଆସେ, ପୁଣି ନଦ, ପୁଣି ସ୍ୱପ୍ନ, ପୁଣି ଜାଗ୍ରତ, ପୁଣି ଦେଖନ୍ତି, ତାଙ୍କ ପାଖ ଶେଯଟା ସିମିତ ଖାଲି ଖାଲି !

ରାତ ପାହଯାଏ··· ରନାଦେବୀ ଉଠି ଦେଖନ୍ତି ଦାସେ ଟେବୁଲ ଉପରେ ମୁଣ୍ଡ ଦେଇ ଶୋଇଚନ୍ତି । ଗୃହକର୍ମନପୁଣା ରନାଦେବୀଙ୍କ ଘରକାମ ଆରମ୍ଭ ହୁଏ । ବାଡ଼ଅଡୁ ରନାଦେବୀ ଫେରଆସି ଦେଖନ୍ତି, ଯେଉଁ ଦେହଟା ରାତରେ ଶେଯ ଉପରେ ନଥିଲା, ସେଇ ଦେହଟା ଶେଯ ଉପରେ ପଡ଼ଚ ; ଢୋଳା ଧରବା ପାଇଁ ଏ ଦନବେଳଟାରେ ତାଙ୍କର ସାହସ ହୁଏନା । ଦାସେ ଉଠୁ ଉଠୁ ଦନ ନଅ···

ମଝିରେ ଘଣ୍ଟାଏ ଫୁରସତ୍ ।

ତାର୍ ଭିତରେ ଝାଡ଼ା ଝପଟ, ଗାଧୁଆ ପାଧୁଆ ଖିଆପିଆ । ତା'ପରେ ପରେ ଅଫିସ ଅଭିମୁଖୀ ହୁଅନ୍ତି ରନାଦେବୀଙ୍କ ସ୍ୱାମୀପଦବାଚ୍ୟ ଦୀନବନ୍ଧୁ ଦାସେ ।

ଏଇ ସେଇ ଦୀନବନ୍ଧୁ ଦାସେ—ଯାହାଙ୍କୁ ଦେଖିଲେ ବଡ଼ ବଡ଼ଅଙ୍କ ମୁଣ୍ଡ ନଇଁଯାଏ—ବଜାର ବାଟେ ଗଲେ ପ୍ରତି ପନ୍ଦର ଗଜରେ ଗୋଟିଏ ଗୋଟିଏ ନମସ୍କାର ମିଳେ, ଭକ୍ତି ଓ ଭୟରେ ଘରେ କେହି ପଶି ପାରନ୍ତି ନାହିଁ । ଏତେ କୃତୀତ୍ୱ, ଏତେ ମହତ୍ତ୍ୱ ଏତେ ପ୍ରତିଭା ବିରୁଦ୍ଧରେ ରନାଦେବୀଙ୍କ ମନର ବିଦ୍ରୋହ ହାରମାନେ ।

ସେଇ ତ ଦିନେ ଏଇ ଦାସଙ୍କୁ କହିଥିଲେ, କିଏ ପୁଣି ତାଙ୍କର ସାଙ୍ଗ ଜଣେ କହିଥିଲା, ଏଭଳି ସ୍ୱାମୀ ଶତ ତପସ୍ୟା କଲେ ମିଳେ ନା । ଯାହାର ମୁହଁଟି ଏଡ଼େ ସୁନ୍ଦର, ତା'ର ଓଠର ଚୁମା କେତେ ମିଠା ହୋଇ ନ ଥିବ ?

ରନାଦେବୀ ହସି ହସି ଗଡ଼ିଯାଇଥିଲେ, କହିଥିଲେ, ଇଚ୍ଛା ଯଦି ହଉଚି ଯାଉନୁ, ଘରେ କେହି ନାହାଁନ୍ତି, କହିବୁ ମୁଁ କହିଲି, ତୋ ଓଠରେ ଚୁମା ଦେବେ ।

ମନକୁ ତରଳ ରଖନି ରନା । ଥଣ୍ଡା ରଖେ—କହି କ୍ଳାନ୍ତ ଦେହକୁ ବିଶ୍ରାମ ଦିଅନ୍ତି ଦାସେ ।

...ଇଆଡ଼େ ରନାଦେବୀ, ଅକ୍ଳାନ୍ତ ଯୌବନକୁ ମନ ଓ ପେଟର କ୍ଷୁଧାର ହୋମାଗ୍ନିରେ ଅହୁତି ଦେଇ ଦେଇ ରୋଷେଇ-ଘର ସିମେଣ୍ଟ ଚଟାଣ ଦେହରେ ଗଡ଼ି ପଡ଼ନ୍ତି । ମହାବ୍ୟାଧିର କ୍ଷୟୀ ଶକ୍ତି ସହିତ ଲଢ଼େଇ କରିବାଭଳି ଦୈହିକଶକ୍ତି ହରେଇ ବସନ୍ତି ସେ । ସେ ମନେ କରନ୍ତି, ତାଙ୍କୁ ଯେମିତି ମୃତ୍ୟୁ ଟାଣି ନେଇଚି ପ୍ରତିଦିନ ରାତିରେ । କିନ୍ତୁ ଠିକ ରାତି ପାହିଲାବେଳକୁ ସେ

ଭୌତିକ ସୀମା ପାର ହୋଇ ନ ପାରି ଦେହଟାକୁ ଫୋପାଡ଼ି ଦେଇ ଯାଇଛି...ଯେଉଁ ଟିକିକ ଜୀବନୀଶକ୍ତି ରହୁଛି, ସେତିକିରେ ଶନାଦେବୀ ଦିବାଯାପନ କରୁଛନ୍ତି । ପୁଣି ରାତିରେ ସେହି ମୃତ୍ୟୁ ସହିତ ତାଙ୍କର ଟଣାଟଣି ଚାଲିଛି

ଦାସଙ୍କ ସହିତ ଶନାଦେବୀଙ୍କର ସମଗ୍ର ଚବିଶ ଘଣ୍ଟାର ଦିନରାତି ମଧ୍ୟରେ ଘଣ୍ଟାଟିଏ ମାତ୍ର ପରିଚୟ, ଦେଖାସାକ୍ଷାତ । ତା'ର ମଧ୍ୟରେ ତିନି ଚାରୋଟି ପଦର କଥାବାର୍ତ୍ତା । ସେ ପୁଣି ଅନ୍ୟ କିଛି ନୁହେଁ । ରାତିକି ବନ୍ଧାବ କି ନାହିଁ, ଦୁଆରମେଲା ରଖିବ କି ନାହିଁ, ଇମିତି କେତୋଟି ଶବ୍ଦ ।

ମାତ୍ର କୋଡ଼ିଏ ବର୍ଷ ବୟସରେ, ଶନାଦେବୀ ମନେ କରନ୍ତି—ଗଲା ଦଶବର୍ଷ ହେଲା, ଯୌବନକୁ ଭୁଲି ଗଲେଣି । ଆଖିତଳେ କଳା ଦାଗ, ଓଠ ଶୁଖିଲା ଶୁଖିଲା, ଗାଲ ପଶିଲା ପଶିଲା, ଦେହ ଚ୍ଲାଇଜ ହୁଗୁଳା ହୁଗୁଳା । ହାତର ସୁନା କାଚଗୁଡ଼ାକ ବାହୁର ଶେଷାଂଶରେ ମଧ୍ୟ ଲଟକି ରହି ପ ରୁନି ।

ବର୍ଷକତଳେ ଶନାଦେବୀଙ୍କୁ ଦେଖିଥିବା ସାଙ୍ଗ ପିଲାଏ ଘରକୁ ଆସି ଶନାଦେବୀଙ୍କୁ ଚିହ୍ନି ନ ପାରି ଏ ଘରେ ଶନାଦେବୀ କିଏ ଅଛନ୍ତି କି ବୋଲି ଶନାଦେବୀଙ୍କୁହିଁ ପଚାରନ୍ତି । ମୁଁ ସେହି ଶନାଦେବୀ ବୋଲି କହିବାକୁ ତାଙ୍କୁ ଲାଜମାଡ଼େ । କେଣେ କିଏ ରହୁଥିଲେ, ଏବେ ନାହାଁନ୍ତି କହି, ସେ ସେମାନଙ୍କୁ ଫେରେଇ ଦିଅନ୍ତି ।

ଷ୍ଟେଥେକାଟିଆ ଡାକ୍ତର ଦାସେ ଆଖିରେ ସବୁ ଦେଖି ମଧ୍ୟ ନ ଦେଖିଲା ଭଳି ରହନ୍ତି ।...ଟେବୁଲ ଉପରେ କିଛିଟା ଦ୍ରାକ୍ଷାସବ, ଚ୍ୟବନପ୍ରାସକୁ ସଜେଇ ଶନାଦେବୀଙ୍କୁ କହିଦେଇ ଯାଆନ୍ତି, ଯାକୁ ଖାଇଲେ ଜର ଛାଡ଼ିବ, ତାକୁ ଖାଇଲେ ଖାସ ଛାଡ଼ିବ । ପେଟ ଖାଲି ରଖିବନି । ଭୋକ ନ ହେଉ ପଛେ ଭଲି କରି ମୁଠେ ମୁଠେ ଖାଇବ ।

ରନାଦେବୀ କଚ୍ଛୁ ଖାଅନ୍ତନ୍ନ, ଖାଲି ସେଇ ସେପେଇଘର ଚଟାଣରେ ପଡ଼ି ରହନ୍ତି ।

× × × ସ୍ତ୍ରୀ ଭିତରେ ଇମିତ ଛଅଟି ମାସ ବିତି ଗଲାଣି । ଦାସଙ୍କ ମନରେ ସହଧର୍ମିଣୀ ରନାଦେବୀଙ୍କ ମୁମୂର୍ଷୁ ଶରୀରକୁ ଦେଖି କୌଣସି ପ୍ରତିକ୍ରିୟା ସୃଷ୍ଟି ହୁଏନା । ସେ ଦେଖନ୍ତି, ରନାଦେବୀଙ୍କ ଗୋଡ଼ ହଲୁଚି, ହାତ ଗୁଲୁଚି, ଆଖି ଫିଟୁଚି, କାନକୁ ଶୁଭୁଚି । ଏ ସବୁର ସଚଳତାହିଁ ପ୍ରକୃତ ଜୀବନ । ଅତଏବ ରନାଦେବୀଙ୍କ ଜୀବନଟା ଅଚ୍ଛି, ଏ ବିଷୟରେ ସେ ନିଶ୍ଚିନ୍ତ ।

ଅଜ ଏ ସହରରେ ତ ଡାକ୍ତର ଶ୍ୟାମଳ ଦାଦା ନାହାଁନ୍ତି କି ନନ୍ଦା ଭଞ୍ଜ ନାହାଁନ୍ତି, କିଏ ଅସି ଦେଖିବ ?

ଖବର ପାଇ ବାପା ଓ ଶ୍ୟାମଳଦାଦା ଚିଠି ଲେଖନ୍ତି, ରନା ଦେହ କମିତ ଅଚ୍ଛି ?

ଦାସେ ଲେଖନ୍ତି, କଚ୍ଛୁ ତ ହେଇନ । କ'ଣ ଠିକିଏ ଜର ହେଉଚି । ଗହେ ଡିଗ୍ରୀରୁ କିନ୍ତୁ ବେଶି ନୁହେଁ । ସ୍ଲୋ ଟେମ୍ପରେଚର୍ ।

ସ୍ଲୋ ଟେମ୍ପରେଚର୍ ନାଁ ଶୁଣି ବାପା ଚମକି ପଡ଼ନ୍ତି ।

... ପୁଣି ଚିଠି ଅସେ, ଏମିତ କେତେଦିନ ହେଲା ହେଲାଣି ?

ଦାସେ ଝିବକିରେ ଲେଖନ୍ତି, ଏଇ ଦି ତିନମାସ ହେଲା ।

ବାପା ସଙ୍ଗେ ସଙ୍ଗେ ଅସି ପହଞ୍ଚନ୍ତି... ଦାସଙ୍କ ସମସ୍ତ ପ୍ରତିବାଦ ସତ୍ତ୍ୱେ ନେଇଯାଅନ୍ତି ରନାଦେବୀଙ୍କୁ, ତାଙ୍କ ଝିଅ ମୃଚ୍ଛ୍ର୍ନାଙ୍କୁ ।

ଦୀର୍ଘ ଛ ମାସର ନୀରବତା ପରେ ବନାଦେବୀ ଦାସଙ୍କ ପାଖକୁ ଲେଖନ୍ତି, ମୁଁ ବଞ୍ଚିଛି । ତୁମେ ତ ଆଉ ମତେ ଗ୍ରହଣ କରିବନି, ବଡ଼ କଷ୍ଟ ହେବ, ଆଉ କୁଳଟି ବାହାହୋଇ ପଡ଼ ।

ଛଅ ମାସ ମଧ୍ୟରୁ ମାସେ ଖଣ୍ଡେ ଦାସଙ୍କର କଟିଥିଲା କୋଧ ଆଉ ବିରକ୍ତିରେ । ପରେ ଏହି ସ୍ଲୋ ପୋଏଜନିଙ୍ଗରେ ରୋଗରେ ପଡ଼ି ଭଲ ହୋଇଥିବା ସାଙ୍ଗ ସାଥିଙ୍କଠାରୁ ସ୍ଲୋ ପୋଏଜନିଙ୍ଗର କମନ୍ତବ୍ୟକାଶ, ପରିଣତିର ତଥ୍ୟ ସଂଗ୍ରହ କରି, ଭାବନ୍ତି ସେ ଯାହା କରିଛନ୍ତି, ଠିକ କରି ନାହାଁନ୍ତି । ବନାଦେବୀଙ୍କ ମନ ଓ ପ୍ରାଣରେ ସେ ବହୁବର୍ଷ ଧରି କଠୋରାଘାତ କରି ଆସିଛନ୍ତି ।

ଦିନେ ଦ୍ରାକ୍ଷାରିଷ୍ଟ ଓ ଚ୍ୟବନପ୍ରାସର ସାତ ଅଠଟି 'ଶିଶିକୁ ଶିଳ ଦେହରେ ବାଡ଼େଇ ଚୂରମାର କରିଦେଇ, ତୁମପ୍ରତି ବଡ଼ ଅନ୍ୟାୟ କରିଛି, ବନା ବୋଲି କହି ବନାଦେବୀଙ୍କ ଫଟୋ ଆଗରେ ମୁଣ୍ଡ ବାଡ଼େଇ ହେଇଥିଲେ ଦାସେ । ନିର୍ଜୀବ ବନାଦେବୀଙ୍କ ଫଟୋଟି ତାଙ୍କୁ ଯିମିତି କହୁଥିଲା, ସଜୀବ ବନା ଆଗରେ ଦିନେ ହେଲେ ଇମିତି ଆଚରଣ କରିଥାଆନ୍ତ । କେଡ଼େ ଖୁସି ହୋଇ ନ ଥାଆନ୍ତା ସେ ।

ଚିଠି ପଢ଼ି ବଡ଼ ବ୍ୟସ୍ତ ହୋଇ ପଡ଼ନ୍ତି ଦାସେ । ଦୀର୍ଘ ଛ ମାସର ବିଚ୍ଛେଦ ପରେ ପୂର୍ଣ୍ଣଚ୍ଛେଦ ପକେଇ ବନାଦେବୀଙ୍କୁ ଫେରାଇ ଆଣିବାପାଇଁ ଦାସେ ଶଶୁରଘରକୁ ଦଉଡ଼ନ୍ତି ।

ଘରେ ପହଞ୍ଚି ପହଞ୍ଚି ସାତଟି ଶାଳୀ ଭିତରୁ ଜଣେ କୁହନ୍ତି, ନାନୀ ଘରେ ନାହିଁ, ଡାକ୍ତରଖାନାରେ ।

ଦେହ ଭଲ ହୋଇ ଗଲାଣି ପରା, ପୁଣି ଡାକ୍ତରଖାନାରେ କାହିଁକି ?

...କ'ଣ କେଜାଣି ସ୍ପେରଲାଇଜେସନ୍ ହେଉଛି ।

ଷ୍ଟୋରଲାଇଜେସନ୍ ! ଚମକି ପଡ଼ନ୍ତି ଦାସେ ! ମାତୃତ୍ୱ ଲାଭ କରିବା ପୂର୍ବରୁ ମାତୃତ୍ୱରୁ ବଂଚିତା ରିନାଦେବୀ ! ମାତୃତ୍ୱ ଅପେକ୍ଷା "ବଞ୍ଚିବାକୁ ଚାହେଁ ମୁହିଁ ଏ ସୁନ୍ଦର ପୃଥିବୀରେ"କୁ ବଡ଼ ବୋଲି ଧରି ନେଲେ ସେ ।

ଧାଇଁ ଯାଆନ୍ତି ଦାସେ ।

ପାଖରେ ଡାକ୍ତର ଦାଦା ଶ୍ୟାମଲ ଆଉ ନନ୍ଦିତା ଭାଉଜ । ରିନାଦେବୀଙ୍କ ଖଟ ଉପରେ ନନ୍ଦିତାଭାଉଜଙ୍କ ଝିଅ, ରିନାଦେବୀଙ୍କ ଝିଅଟି, ଦାସଙ୍କ ଭଣିଜୀ ତଥା ମାତୃତ୍ୱର ଏକ ନିର୍ଭୁଲ ପରିଚୟ ।

ଶ୍ୟାମଳ କହିଲା, ଦିନୁ ! ଆଉ କିଛି ଭୟ ନାହିଁ । ରିନା ବର୍ତ୍ତମାନ ସମ୍ପୂର୍ଣ୍ଣ ସୁସ୍ଥ । କିନ୍ତୁ...

ରିନାଦେବୀ ସେତେବେଳକୁ ବହୁଦିନୁଁ ସିଲେଇ କରିଥିବା ଜାମାଟି ନିନିକୁ ପିନ୍ଧେଇ ଦେଉଥିଲେ । ଦାସଙ୍କୁ ଦେଖି କହିଲେ, ନିନି ଠିକ୍ ଏ ମୋଟା ଦେଖାଯାଉଚି ନା ?

ଦାସେ ଦେଖିଲେ, ରିନାଦେବୀ ବଡ଼ ସୁନ୍ଦର ଦେଖା-ଯାଉଚନ୍ତି । ବ୍ୟାଧି ତାଙ୍କ ଦେହର ନିଧି ଫେରେଇ ଆଣିଚି କିନ୍ତୁ ମନର ନିଧିକୁ ହରାଇ ବସିଚନ୍ତି ସେ ।



ମୁଦ୍ରାକର ଶ୍ରୀ କୃଷ୍ଣମୂର୍ତ୍ତି ପରିଡ଼ା, ପ୍ରଜାତନ୍ତ୍ର ପ୍ରେସ, କଟକ—୨

# ଏହି ଲେଖକଙ୍କ ଅନ୍ୟ ବହି

**ଉପନ୍ୟାସ—**

କେତେ ବାସନ୍ତୀ
ପ୍ରେମ ଓ ପ୍ରଳୟ
ମନମୃଗ୍ଧା

**ଭ୍ରମଣ କାହାଣୀ—**

ପାଷାଣୀ କନ୍ୟା
ତୁଷାର କନ୍ୟା

**ଗଳ୍ପ—**

ଫଳଂ ଫଳେ ଫଳାନ୍ତି
ଅଶାନ୍ତ ଝଡ଼
ମଧ୍ୟାହ୍ନ ଯୂଥିକା

**ଅନୁବାଦ—**

ଚରିତ୍ରହୀନ
ବସୁନ୍ଧରା
ଚୀନ ଦେଶେ ଅଛିଲ୍
ସାହେବ ବିବି ଗୋଲାମ
ଛିନ୍ନମେଘ

**ନାଟକ—**

ନୂଆବୋଉ
ଏକାଙ୍କିକା ସମାହାର
ଶିଶୁ ଏକାଙ୍କିକା

**କବିତା—**

ଫୁଲଟି କଲାବେଣୀ
ହେ ମୃତ୍ୟୁଞ୍ଜୟୀ